Approved by the Andhra University, Waltair for
B.A & B. com. as Non-- Detailed study since 1973

# ବାଲିଘର



* କେଳୁ ଚରଣ ସାମଂତରାୟ

॥ ବାଲିଘର ॥

ଅଧ୍ୟାପକ କେଳୁ ଚରଣ ସାମଂତରାୟ
ଏମ୍, ଏ, ଏଲଏଲ. ବି.
ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ,
ଶ୍ରୀକାକୁଲମ୍ (ଆ. ପ୍ର) ।

ଦ୍ୱିତୀୟ ପ୍ରକାଶ : ୧୯୮୨
ପ୍ରକାଶକ :
ତାରତାରିଣୀ ପୁସ୍ତକାଳୟ
ବ୍ରହ୍ମପୁର-୭୬୦୦୦୧, ଗଞ୍ଜାମ ।
ପ୍ରଚ୍ଛଦ ପଟ୍ଟ:
ଶ୍ରୀ ସୀତାକାନ୍ତ ମହାପାତ୍ର ।
ମୂଲ୍ୟ : ପାଞ୍ଚ ଟଙ୍କା ମାତ୍ର

**BALIGHAR**

(Social Drama)

By :
Sri Kelu Charana Samantaray,
M. A., LL. B
Lecturer, Department of Oriya
Government College,
SRIKAKULAM (AP)

Published by :
**Tara Tarini Pustakalaya**
Berhampur—760001, Ganjam.
Printed at : Man Mohan Traders
Price Rs. 5. 00

## ।। ପ୍ରଥମ ସଂସ୍କରଣ ।।

ଯେଉଁମାନେ ମୋ ଆଖିରେ ଜ୍ଞାନର ଆଲୋକ ବିଚ୍ଛୁରିଦେଇ କହିଲେ, "କେଳୁ, ତମେ ନାଟକ ଲେଖ" ସେହି ପୂଜ୍ୟାସ୍ପଦ ମୋର ଜ୍ଞାନାଲୋକର ଉତ୍ସ.........

ଡକ୍‌ଟର କୁଂଜବିହାରୀ ତ୍ରିପାଠୀ
ଡକ୍‌ଟର ବେଣୀମାଧବ ପାଢ଼ୀ
ଡକ୍‌ଟର ସୁଦର୍ଶନ ଆଚାର୍ଯ୍ୟ
ଆଉ......
ଡକ୍‌ଟର ସୀତାରାମ ମହାପାତ୍ରଙ୍କୁ

ଭକ୍ତି ସହ ଅର୍ପିତ........ ସମର୍ପିତ ।।

କେଳୁ ଚରଣ



ବାବା,

ମୋ "ବାଲିଘର"ର ଦ୍ୱିତୀୟ ସଂସ୍କରଣ ତମର । ଏ ବାଲିଘର ତମର ଆଶୀର୍ବାଦର ଗୋଡ଼ିରେ ପଥର ଘର ହେବ । ଏଥିରେ ସନ୍ଦେହ ନାହିଁ ।

କେଳୁ ଚରଣ

ନାଟ୍ୟକାରଙ୍କ କେତୋଟି ସୃଷ୍ଟି :

କହିବା କାହାକୁ

ମୁଁ କିଏ ? ? ?

ମୁଁ ଲେଖିବି...... । (କ୍ଷୁଦ୍ରଗଳ୍ପ)

ପୋଡା ଅଂଗାର (ଉପନ୍ୟାସ)

ବଳୟ (ନାଟକ)

* ବ୍ୟବସାୟ ସୂତ୍ରରେ ଅଭିନୟ ପ୍ରଦର୍ଶନ ଲେଖକଙ୍କ ଅନୁମତି ସାପେକ୍ଷ ।

## ମୋ କଥା

'କହିବା କାହାକୁ' ନାଟକ ପରେ 'ବାଲିଘର'ର ସୃଷ୍ଟି । ନାଟକ ଲେଖିବାର ଉତ୍ସାହ ମନରୁ ମରିଯିବା ବେଳେ ଶ୍ରୀ ଭଗବାନ ପାତ୍ରୀ ଅଣ୍ଟାଭିଡ଼ିଲେ ଦ୍ୱିତୀୟ ସଂସ୍କରଣ ପାଇଁ । ନାଟକ ଉପରେ ମତାମତ ଦେବେ ସେମାନେ, ଯେଉଁମାନେ କୋଣାର୍କର ମୁଂଡ଼ି ମରିଯିବା ପରେ ଧରମାର ଆବଶ୍ୟକତା ଅନୁଭବ କରୁଥିଲେ ।

ସବୁ ନାଟକରେ ନାଟ୍ୟକାର ମାନେ ପ୍ରଳାପ କରନ୍ତି ବୋଲି ସେମାନେ ସବୁ ସେ ଧନ ମୋ ଆଗରେ ବଖାଣି ବସିଲେ । କିନ୍ତୁ ଏଇ ଦୁଇ ପଦ ମୋର ପ୍ରଳାପ ନ ହେଲେ ମଧ୍ୟ ଅସବର୍ଣ୍ଣ ବିବାହକୁ ଉତ୍ସାହିତ କରିବା ମୋର ନିଜସ୍ୱ ଇଚ୍ଛା ।

ପ୍ରଥମ ପ୍ରକାଶ ପାଇଁ ପାଂଡୁଲିପି ପ୍ରସ୍ତୁତ କ୍ଷେତ୍ରରେ ବନ୍ଧୁ ପ୍ରମୋଦ ଦାଶ ଏବଂ ନାରାୟଣ ସାମଲଙ୍କ ଅବଦାନ ଅବିସ୍ମରଣୀୟ । ଦ୍ୱିତୀୟ ପ୍ରକାଶ ପାଇଁ ଭଗବାନ ବାବୁ ନିଶ୍ଚୟ ଧନ୍ୟବାଦାର୍ହ ।

ଶେଷରେ ପୂଜ୍ୟ ଗୁରୁ ଅଧ୍ୟାପକ ଅରକ୍ଷିତ ସାହୁ ଏବଂ ବନ୍ଧୁ ନାଟ୍ୟକାର ବିପିନ ମହାପାତ୍ରଙ୍କୁ ମନେ ପକାଇ ରହିଲି । ପୁଣି କେବେ ଯେ ଦେଖା ହେବ କେଉଁ ପୃଷ୍ଠାରେ କହି ପାରୁନି ।

ଶ୍ରୀକାକୁଲମ୍ ।

ବିଶ୍ୱକର୍ମା ପୂଜା ।

୧୭. ୯. ୮୧ ।

କେଳୁ ଚରଣ

**ସେମାନେ କହନ୍ତି :**

✳ ଅଧ୍ୟାପକ ରଜତ କୁମାର କର :

ଶ୍ରୀ କେଳୁ ଚରଣ ସାମନ୍ତରାୟ ଜଣେ ସୁ ଅଭିନେତା । ତାଙ୍କର ହାସ୍ୟରସାତ୍ମକ ଅଭିନୟ ବହୁବାର ଦେଖି ମୁଁ ମୁଗ୍ଧ ହୋଇଛି । ଅଭିନେତା ନାଟ୍ୟକାର ହେଲେ ନାଟକ ମଂଚୋପଯୋଗୀ ହୁଏ ।

ଅଭିନେତା କେଳୁବାବୁ ଏଥର ନାଟ୍ୟକାର ଭବେ ଅଂଶ ଭିଡ଼ିଛନ୍ତି । "ବାଲିଘର" ନାଟକରେ ପଥରଘର ଭଳି ଶକ୍ତ ରହୁ । ଏହାହିଁ ମୋର କାମନା ।

ସାମାଜିକ ନାଟକକୁ ସରସ କରିବା ଦିଗରେ ନାଟ୍ୟକାରଙ୍କ ଆନ୍ତରିକତା ଉତ୍ସାହପ୍ରଦ । ଆଜିର ଏ ପବିତ୍ର ଦିନରେ ମୁଁ ତାଙ୍କୁ ଶୁଭେଚ୍ଛା ଜଣାଉଛି ।

ବ୍ରହ୍ମପୁର ।

୧୫-୮-୭୨ । **ରଜତ କୁମାର କର**

✳ ✳ ଅଧ୍ୟାପକ ଦଣ୍ଡପାଣି ମହାରଣା

କେଳୁ ଭାଇର ନାଟକ ପଢ଼ିବାରତ ସୁଯୋଗ ପାଇନି, ପାଇଥିଲି ନାଟକଟିରେ ନାୟକ ଭୂମିକାରେ ଅଭିନୟ କରିବା ପାଇଁ । ହଜିଲା ଦିନରକଥା, ଏବେ ମଧ୍ୟ ମୋର ମନେ ପଡ଼େ । "ବାଲିଘର" ନାଟକ ଲେଖା ସରିଥାଏ । କେଳୁ ବାଧ୍ୟ କରିଥିଲେ ପାଣ୍ଡୁଲିପିଟି ଉପରେ ନାଁଟି ନଜେ ପସନ୍ଦ କରି ଲେଖିବା ପାଇଁ ।

ନାଟକ ଲେଖାରୁ ସେ ଦୂରେଇ ଯାଇଛି ଶୁଣି ଥରେ ତାକୁ ଗାଳି ଦେବାର ସୁଯୋଗ ପାଇଲି । ଦୁଃଖ କଲା, କହିଲା—"ଘର ଜଂଜାଳ ଭିତରେ ଆଉ ପାରୁନି" ।

ଆଶା ମୋ ଗାଳି ତା'ର ପ୍ରେରଣା ହେଉ । ନବୀନ ସୃଷ୍ଟି ପାଇଁ ଆଗେଇ ଯାଉ ।

ଦେବଗଡ଼ ।

୮. ୮. ୭୨ । **ଦଣ୍ଡପାଣି ମହାରଣା**

✳ ✳ ✳ "ସମାଜ"—୧. ୧୦. ୭୨

   

"ସୁନ୍ଦର ଓ ସାବଲୀଳ ଭାଷାରେ ଲେଖକ ସଲାପ ରଚନା କରିଥିବାରୁ ଧନ୍ୟବାଦାର୍ହ । ମୁଦ୍ରଣ ପରିପାଟୀ ସୁନ୍ଦର ହୋଇଛି ।"

ଏଇ ସବୁ ମଂଚରେ:

**ଛାତ୍ର ପରଷଦ,**
ସାରୁଳଆ (ଗଞ୍ଜାମ)

**ଉତ୍କଳୀୟ ସର୍ବୋନ୍ନତ ସମିତ**
ବ୍ରହ୍ମପୁର (ଗଞ୍ଜାମ)

*　　*

| | | |
|---|---|---|
| ସୁରେଶ | ‖ ରାଜୁ (ଛୋଟ) | ‖ ପ୍ରଭାକର |
| କୁନା | ‖ କଶୋର (ଛୋଟ) | ‖ ରବ |
| ଦଣ୍ଡପାଣି ମହାରଣା | ‖ ରାଜୁ | ‖ ନମେଇ ଚରଣ ପଟ୍ଟନାୟକ |
| ହରହର ଦାଶ | ‖ କଶୋର | ‖ ଦାଶରଥି ଦାଶ |
| ଲଙ୍ଗରାଜ ପାଣ୍ଡ | ‖ ଦନେଇ | ‖ ନବାନ ଚନ୍ଦ୍ର ପାଢ଼ୀ |
| କେଳୁ ଚରଣ | ‖ ମକୁନ୍ଦ | ‖ ନାରାୟଣ ସାମଲ |
| ଦବାକର ସାହୁ | ‖ ଯୋଗୀ | ‖ ଶିଶିର କୁମାର ମିଶ୍ର |
| ମାଷ୍ଟ୍ର ଶ୍ରୀ ପାଣ୍ଡବ ମାଝି | ‖ ଦାନବନ୍ଧୁ | ‖ ରାମନାଥ ପାଣ୍ଡ |
| ରାଜକଶୋର ଶତପଥି | ‖ ଶରତ | ‖ ଗୌରୀ ମହାପାତ୍ର |
| ପ୍ରସନ୍ନକୁମାର ସେନାପତ | ‖ ପୋ: ସ: ଇ: | ‖ ମନ୍ମଥନାଥ ସୁଆର |
| ବ୍ରଜବନ୍ଧୁ ଧଳ | ‖ ସପନ | ‖ ରଘୁନାଥ ସାହୁ |



| | | |
|---|---|---|
| କୁନ | ‖ ମାୟା (ଛୋଟ) | ‖ ଗୁନାର |
| କରଣ | ‖ ଗୀତା (ଛୋଟ) | ‖ ଜୋଷ୍ନା |
| ବିନ୍ଦୁ ବାନାର୍ଜୀ | ‖ ମାୟା | ‖ ଅନୁରାଧା ପଟ୍ଟନାୟକ |
| ସଯୁକ୍ତା ମିଶ୍ର | ‖ ଗୀତା | ‖ ସରତା ପଟ୍ଟନାୟକ |



| | | |
|---|---|---|
| ଡା: ବ୍ରଜବନ୍ଧୁ ଧଳ | ‖ ସଙ୍କେତ | ‖ ପ୍ରମୋଦଚନ୍ଦ୍ର ରଥ |
| ଗଣେଶ୍ୱର ପାଣି ଓ ମାଷ୍ଟ୍ର ଶ୍ରୀ ପାଣ୍ଡବ ମାଝି | ‖ ସଙ୍ଗୀତ | ‖ ମିହାର ପଟ୍ଟନାୟକ |
| ବିନ୍ଦୁ, ସଯୁକ୍ତା | ‖ କଣ୍ଠଦାନ | ‖ ଶାଂତନୁ କୁମାର ରାଜଗୁରୁ |

କେଳୁ ଚରଣ, ପଙ୍କଜ, ॥ ସୂରଣେ ॥ ବିପିନ ମହାପାତ୍ର
ପଞ୍ଚାନନ — କେଳୁ ଚରଣ
ହରିହର (କାଳୁ) ମାର୍କଣ୍ଡ, ॥ ମଂଚମାୟା ॥ ଶ୍ରୀକୃଷ୍ଣ ଚିତାଳୟ, ବ୍ରହ୍ମପୁର
ଅମ୍ବିକାସି, ସୁବାସ, ଶଶି,
ଶରତ ॥ ମଂଚପରିକଳ୍ପନା ॥ ସୁରେନ୍ଦ୍ର ନାଥ ସାବତ, ରଘୁନାଥ
ପ୍ରସନ୍ନକୁମାର ସେନାପତି ॥ ଆଲୋକ ॥ ଅନ୍ନପୂର୍ଣ୍ଣା ଇଲେକ୍ଟ୍ରିକାଲସ୍
ଶ୍ରୀ ବଳଭଦ୍ର ଦଳାଇ ॥ ପରିକଳ୍ପନା ॥ ଶ୍ରୀ ଉମାଚରଣ ପଟ୍ଟନାୟକ
ପଲ୍ଲୀ ସମାଜ ସେବା ॥ ମଂଚ ॥ ପ୍ରକାଶମ୍ ହଲ, ବ୍ରହ୍ମପୁର
ସହଯୋଗ ସମିତି ।
ସାରୁଳିଆ ।

**ଧରଡକୋଟ ଯୁବ ସଂସ୍ଥା** — **ପାରିଜାତ ଥିଏଟର୍ସ,**
ଧରକୋଟ (ଗଞ୍ଜାମ) — ବ୍ରହ୍ମପୁର

* *

କୁନା ॥ ରାଜୁ (ଶ୍ରେଷ୍ଠ) ॥ ମୋହନ
ମୁନା ॥ କିଶୋର (ଶ୍ରେଷ୍ଠ) ॥ ମୁନା
ସୂର୍ଯ୍ୟପଣ୍ଡା, ପରେ ପ୍ରମୋଦକୁମାର ଦାସ ॥ ରାଜୁ ॥ ରମେଶଚନ୍ଦ୍ର ଆଚାର୍ଯ୍ୟ
ବିନୋଦବିହାରୀ ପଣ୍ଡା (ହରି) ॥ କିଶୋର ॥ ଶଶି ଭୂଷଣ ସ୍ୱାଇଁ
ରାମଚନ୍ଦ୍ର ପଣ୍ଡା ॥ ଦୀନବନ୍ଧୁ ॥ କାଶୀନାଥ ନାୟକ
ଭରତ ପରେ କେଳୁଚରଣ ॥ ମକୁନ୍ଦ ॥ ନାରାୟଣ ସାମଲ
ଉମା ପରେ ବାଲକୃଷ୍ଣ ଦାଶ ॥ ଯୋଗୀ ॥ କାଶୀନାଥ
କୃଷ୍ଣଚନ୍ଦ୍ର ପଣ୍ଡା ॥ ସପନା ॥ ସୁବାସଚନ୍ଦ୍ର ସାହୁ
ବସନ୍ତ କୁମାର ପାତ୍ର ॥ ଶରତ ॥ ସନ୍ତୋଷ କୁମାର ଷାରମଙ୍କ
ଶରତ ପରେ ନବୀନ ପାଢ଼ୀ ॥ ଦନେଇ ॥ ଶରତଚନ୍ଦ୍ର ମହାନ୍ତି

ସୁବାସ ॥ ପୋ: ସ: ଇ: ॥ ମଙ୍ଗୁଳି
ରମେଶ ॥ ପୋଲିସ ॥ ଡ଼. ଝୀନାଥ



ସୁଷମା ॥ ମାୟା (ଷ୍ଟେଜ) ॥ ରୁକ୍ମିଣୀ ସେନାପତି
ପ୍ରେମଲତା ॥ ଗୀତା (ଷ୍ଟେଜ) ॥ ଝୁନ
ସନ୍ଧ୍ୟା ରାୟ ॥ ମାୟା ॥ ସରୋଜିନୀ ଦେବୀ
ସୁନ୍ଦର ମଣି ॥ ଗୀତା ॥ ସମିତା ରାୟ
ଅଧ୍ୟାପକ ପ୍ରମୋଦ କୁମାର ଦାଶ ॥ ସଙ୍କେତ ॥ ଶ୍ରୀ ନାରାୟଣ ସାମଲ
ବାଲକୃଷ୍ଣ ଦାଶ ଓ ॥ ସ୍ୱର, ସଙ୍ଗୀତ ॥ ନେତାଜୀ ପାତ୍ର
ଗୌରହରି ସାହୁ ॥ ସଙ୍ଗୀତ ॥ କାଶୀନାଥ, ରମେଶ
ବାଲକୃଷ୍ଣ ଦାଶ (ବାଲୁ) ॥ କଣ୍ଠଦାନ ॥ ଶିବାଜୀ ରାୟ
ନବୀନ, କେଳୁଚରଣ, ପ୍ରମୋଦ ॥ ସ୍ମରଣେ ॥ ଶରତଚନ୍ଦ୍ର, ଭିକାରୀ
କେଦାର ଆସ୍ତା ॥ ଆଲୋକ ॥ ସଞ୍ଜୟ
ଚନ୍ଦ୍ରାଳୟ ରୂପଶ୍ରୀ, ॥ ମଞ୍ଚମାୟା ଓ ॥ ବିପିନ ବିହାରୀ ନାୟକ
କୃଷ୍ଣପୁର ରୂପସଜ୍ଜା ବାବୁ ମହାରଣା
ସୁରେନ୍ଦ୍ର ସାହୁ ଓ ସାବତ ॥ ମଞ୍ଚପରିଚାଳନା ॥ ସୁବାସ ଓ ହରି
ବିନୋଦ ବିହାରୀ ପଣ୍ଡା (ହରି) ॥ ସର୍ବାଧିକାରୀ ॥ ଶ୍ରୀ ପି. ଚକ୍ରଧର ।



## ଉତ୍କଳ ପାଠାଗାର
## ପାତ୍ରୁ (ଗଞ୍ଜାମ)

ରାଜୁ (ଶ୍ରେଷ୍ଠ) ॥ ଅରୁଣ
କିଶୋର (ଶ୍ରେଷ୍ଠ) ॥ ପ୍ରସାଦ
ରାଜୁ ॥ ଭଗବାନ ପାଣିଗ୍ରାହୀ
କିଶୋର ॥ ଗୋକୁଳାନନ୍ଦ ସାହୁ
ଶରତ ॥ ସୁରେନ୍ଦ୍ର ପ୍ରସାଦ ସାବତ
ଦୀନବନ୍ଧୁ ॥ ଦଣ୍ଡପାଣି ପାଣିଗ୍ରାହୀ
ଦନେଇ ॥ ତାରିଣୀ ଚରଣ ସାହୁ
ସପନ ॥ ଭାସ୍କରଚନ୍ଦ୍ର ସେଠୀ
ମକୁନ୍ଦ ॥ କେଳୁଚରଣ ସାମନ୍ତରାୟ (ଅତିଥି)
ଯୋଗୀ ॥ ପ୍ରମୋଦ କୁମାର ଦାଶ
ପୋ: ସ: ଇ: ॥ ପ୍ରଫୁଲ୍ଲ କୁମାର ସାହୁ



ମାୟା (ଶ୍ରେଷ୍ଠ) ॥ କୁନି
ଗୀତା (ଶ୍ରେଷ୍ଠ) ॥ ପ୍ରଣତି
ମାୟା ॥ ସରିତା ପଟ୍ଟନାୟକ
ଗୀତା ॥ ସସ୍ମିତା ମିଶ୍ର
ସଙ୍କେତ ॥ ଅଧ୍ୟାପକ ପ୍ରମୋଦକୁମାର ଦାଶ
ସଙ୍ଗୀତ ॥ ବାଲକୃଷ୍ଣ ଦାଶ, ଗୌରହରି ସାହୁ
ଶାନ୍ତନୁ କୁମାର ରାଜଗୁରୁ
ସ୍ମରଣେ ॥ ସୂର୍ଯ୍ୟନାରାୟଣ ମହାପାତ୍ର
ମଞ୍ଚମାୟା ॥ ଚିତ୍ରାଳୟ ରୂପଶ୍ରୀ, ବ୍ରହ୍ମପୁର
ମଞ୍ଚ ପରିକଳ୍ପନା ॥ ସୁରେନ୍ଦ୍ରନାଥ ସାବତ ଓ ସୁରେନ୍ଦ୍ର ସାହୁ
ଆଲୋକ ଓ ଧ୍ୱନି ରଚନା ॥ କେଦାର ଆସ୍ତା, ଆସ୍ତା ଆର୍ଟସ୍, ବ୍ରହ୍ମପୁର

# ବାଲିଘର



* କେଲୁ ଚରଣ ସାମଂତରାୟ

## ନାଟକ ନୁହେଁ—ଅ-ନାଟକ

[ଅନ୍ଧାର ରାତ୍ରୀ—ଉଚ୍ଛୁଳା ନଈ ପରି ଦୂର ଦିଗ୍‌ବଳୟରୁ କିଛି ଅଂଶ ଦେଖା ଯାଉଥିଲା । ଧୂଆଁଳିଆ ମଞ୍ଚ ମଧ୍ୟରେ ଫୁଟି ଉଠୁଥିଲା ଏକ କ୍ଷୀଣ ନାରୀର ଛାଇ । ମୁକୁଳା ବାଳ । ଅପଜଡ଼ା ଅଂଗ ଲତାରୁ ସ୍ପଷ୍ଟ ମନେ ହେଉଥିଲା ଆଦିମ ମାନବର ଏକ ନଗ୍ନ ରୂପ ପରି । ଅନ୍ତରାଳରେ ସଂଗୀତ ଭୋଳୁଥିଲା କରୁଣ ରାଗିଣୀର ସ୍ୱର ଆଉ ଭାସି ଆସୁଥିଲା କରୁଣ ସଂଗୀତ । ]

କାହିଁକି ଆକାଶ ଝୁରେ ବରଷା ବୁଝେନା
କାହିଁକି କଦମ୍ବ ଝୁରେ ବୁଝେନା ଯମୁନା ।

ବୃନ୍ତକ ପକ୍ଷୀର ସ୍ୱର
　　ବୁଝେନା ଜୋଛନା ।
ମଉଳା ଫୁଲର ମହକ
　　ବସନ୍ତ ବୁଝେନା ।

ବୁଝେନା କାଳିଆ ରାଧାର କଳଙ୍କ, ଅପବାଦର ଯନ୍ତ୍ରଣା,
ବୁଝିକି ପାରିବ ଦଗ୍ଧବନ ସେ, କୋକିଳ ମନର କାନ୍ଦଣା ।

ଅନ୍ତରାଳରୁ ସ୍ୱର : Love is a cigarette which begins with fire and ends with smoke । ତଥାପି ମଣିଷ ମନର ଆଦିମ ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ସମସ୍ତେ କହନ୍ତି ପ୍ରେମ । ଏ ପ୍ରେମ ମୋ ପାଇଁ କଳଙ୍କ । ରାଧା ଓ କୃଷ୍ଣଙ୍କ ପାଇଁ ଅପବାଦର ନାଗରୀ, ରତି ଓ ରତ୍ୟାଦଙ୍କ ପାଇଁ ଆତ୍ମହତ୍ୟାର ଡ଼ାକରା .. ।

(ବିପରୀତ ଦିଗରୁ ଫୁଟି ଉଠିଲା ଅନ୍ୟ ଏକ ପୁରୁଷର ଛାଇ)

ଅନ୍ୟ ଏକ କଣ୍ଠ ସ୍ୱର : ପ୍ରେମ ଅନ୍ଧ । ପ୍ରେମ ନିକଟରେ ଜାତି, ଧର୍ମ, ବର୍ଣ୍ଣ କିଛି ପ୍ରଭେଦ ନଥାଏ । ପ୍ରେମ ଅବୁଝା । ସେ ସୁନ୍ଦର, ଅସୁନ୍ଦର କିଛି ଖୋଜେନା । ପ୍ରେମ ଅତି ଅମାନିଆ । ସେ ସମାଜର ସମସ୍ତ ଜୁଆଁରକୁ ପାଦରେ ଠେଲି ଦେଇଥାଏ । ପ୍ରେମ ଏକ ସୋରିଷ ଫୁଲର ଟଭେଲା । ଭାସିଯାଏ ତଟ ଖୋଜି ଖୋଜି ଶେଷରେ ମରୁ ପ୍ରାନ୍ତରକୁ ।

(ଦୁହେଁ କ୍ରମେ କ୍ରମେ ନିକଟେଇ ଆସିଛନ୍ତି)

ଅନ୍ୟ ଏକ କଣ୍ଠ ସ୍ୱରରୁ : ଯୁଗ ପରେ ଯୁଗ । ଯାହାର ଆଦି ନାହିଁ, ଅନ୍ତ ମଧ୍ୟ ନାହିଁ । ଆଦମ ମଣିଷ, ପଶୁ, ପକ୍ଷୀ । ସେ ଯୁଗରୁ ଏ ଯୁଗ ଯାଏଁ । "ଯୁଗକୁ ଯୁଗ ଏହିମତେ, ଉଦ୍ଭବ କହଇ ଯୁକତେ" । ପ୍ରେମର ଏ ବଜାରରେ ସ୍ୱପ୍ନର ସଉଦା କିଣିବାକୁ, ଲହଜ଼ ଗଣି ଧନୀ ହେବାକୁ କିଏ ସେ ଭଲ ନପାଏ ? ତୁମେ, ମୁଁ ଆଉ ସେମାନେ... !!!

(ଦୁଇଟି ଶ୍ୱାସର ମିଳନ ହୋଇଛି ଏବଂ ଦୁହେଁ ହଜି ଯାଇଛନ୍ତି ଦୁହିଁଙ୍କ ଦେହରେ)

[ମଞ୍ଚ ଅନ୍ଧାର ହୋଇ ଫୁଟି ଉଠୁଥିଲା ଧଳା ପରଦାରେ ଅଭିନେତା ଓ ଅଭିନେତ୍ରୀଙ୍କ ପରିଚୟ ସ୍ଲିଡ଼ ଚିତ୍ର ମାଧ୍ୟମରେ ।]

**ବାଲିଘର :**

ରାଜୁ (ଶ୍ରେଷ୍ଠ) ॥
କିଶୋର (ଶ୍ରେଷ୍ଠ) ॥
ରାଜୁ ॥
କିଶୋର ॥
ଦୀନବନ୍ଧୁ ॥
ମୁକୁନ୍ଦ ॥
ଯୋଗୀ ॥
ସପନ ॥
ଶରତ ॥
ଦନେଇ ॥
ପୋ: ସବ୍‌ଇନସ୍‌ପେକ୍ଟର ॥
ପୋଲିସ୍ ॥

ମାୟା (ଶ୍ରେଷ୍ଠ) ॥
ଗୀତା (ଶ୍ରେଷ୍ଠ) ॥
ମାୟା ॥
ଗୀତା ॥



# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ସମସ୍ତ ସନ୍ଧ୍ୟାନ୍ତପ୍ରାପ୍ତ-ଦୂର ଦିଗ୍ବଳୟ ସହ ଦେଖା ଯାଉଥିଲା ପୂର୍ବୋକ୍ତ ଦୃଶ୍ୟ । ଆଲୋକିତ ହେବା ବେଳକୁ ଦୁଇଟି ଛୁଆ ନଈବାଲିରେ ବାଲିଘର ତିଆରି କରୁଥିଲେ । ମାୟା ସାହାଯ୍ୟ କରୁଥିଲା ରାଜୁକୁ ଏବଂ ଗାଙ୍ଗା କିଶୋରକୁ । ପୂର୍ବୋକ୍ତ ଗୀତଟିରେ ଶେଷ ଭାଗ କ୍ରମେ କ୍ରମେ ମିଳାଇ ଯାଉଥିଲା ।]

ରାଜୁ : ଏଇଟି ମୋ ଘର ଆଉ ସେଇଟି କିଶୋରର ଘର । ଆଚ୍ଛା ମାୟା, ତୁ କାହାଘରକୁ ବୋହୂ ହୋଇ ଆସିବୁ କହିଲୁ ?

ମାୟା : ରାଜୁ ଭାଇ, ତମ ଘରକୁ ।

କିଶୋର : ମୋ' ଘରକୁ ଆସିବୁନି ?

ମାଧ୍ୱୀ : ନା' ।

କିଶୋର : ଯା'......, ତୁ ମୋ' ସାଙ୍ଗରେ କେବେ ଖେଳିବୁନି ।

ମାଧ୍ୱୀ : ରାଜୁ ଭାଇ, କିଶୋର ଭାଇ ଭାରି ଦୁଷ୍ଟ । ମୁଁ ତୁମଘରେ ବୋହୂ ହୋଇ ତମର ପାଖରେ ରହିବି ।

ଗୀତା : ଆଉ-ମୁଁ ?

କିଶୋର : ତୁ ମୋ ଘରକୁ ବୋହୂ ହୋଇ ଆସିବୁ ?

ଗୀତା : ନା' ଲୋ ମା... ।

କିଶୋର : ଆଉ...... ।

ଗୀତା : ମୁଁ ବି ରାଜୁ ଭାଇ ଘରକୁ ଯିବି, ତୁମେ ଦୁଷ୍ଟ ।

ରାଜୁ : ଆ ମାଧ୍ୱୀ, ଆ ଗୀତା । (ଦୁହିଁଙ୍କ ହାତଧରି ପାଖକୁ ନେଲା) [ପ୍ରବେଶ କଲା ସପନ । ରାଜୁଘର ପୁରୁଣା ଚାକର । ୫୫-ବୟସ ତୁଳନାରେ ବେଶି ଭାଙ୍ଗି ପଡ଼ିଛି ସେ]

ସପନ : ସାନ ବାବୁ ! ସାନ ବାବୁ !! (ରାଜୁକୁ ଦେଖି) ବେଲ ଆସି ବୁଡ଼ିବା ଉପରେ । ନଖାଇ ନପିଇ ଏଠି ଆସି ବାଲିଘର ତିଆରି ଲାଗିଛ । ବାପାଡେଣେ ଖୋଜି ଖୋଜି ବ୍ୟସ୍ତ ହେଲେଣି ।

ରାଜୁ : ସପନ, (ଗେଲରେ) ବାପା ରାଗିଛନ୍ତି ନା ?

ସପନ : ନା, ରାଗିବେ କାହିଁକି ? ଗୁଣବନ୍ତ ପୁଅଙ୍କୁ ଜଗି ବସିଛନ୍ତି । ଆସ ।

ରାଜୁ : ଆଚ୍ଛା, ସପନ ତୁ ଯା, ମୁଁ ସଙ୍ଗେ ସଙ୍ଗେ ଯାଉଛି । (ସପନ ଚାଲିଗଲା) ଆସ, ସମସ୍ତେ ଲୁଚକାଳି ଖେଳ ଖେଳିବା ।

[ସମସ୍ତେ ମିଶି ଖେଳ ଆରମ୍ଭ କଲେ । ଗୀତା ଚୋର ହୋଇ ଆଖି ବନ୍ଦକରି ଖୋଜୁଥାଏ । କିଶୋର ଅନ୍ତରାଳକୁ ଚାଲିଯିବା ପରେ, ତାକୁ ଖୋଜି ଖୋଜି ମାଧ୍ୱୀ ଗଲାବେଳେ ରାଜୁକୁ ଧରି ନେଇଛି ଓ ରାଜୁ ଅନ୍ଧପୁତୁଳି ବାନ୍ଧି ଖୋଜୁ ଖୋଜୁ ଧରି ନେଇଛି ମାଧ୍ୱୀର ପିନ୍ଧା ଲୁଗାକୁ...]

ରାଜୁ : କିଏ...ମାୟା... ।

[ମଂଚ ଅନ୍ଧକାର ହୋଇ କ୍ଷଣିକ ପରେ ପୁଣି ଆଲୋକିତ ହେଲାବେଳକୁ ଦେଖାଗଲା ସେଇ ନଈକୂଳ । ଇତ୍ୟବସରରେ ବାରଟି ବର୍ଷ ବିତି ଯାଇଛି । ପୂର୍ଣ୍ଣ ଯୌବନା ମାୟା ନଈରୁ ସ୍ନାନ ସାରି ପାଣି ନେଇ ଫେରୁଛି ଘରକୁ । ରାଜୁ ଗ୍ରୀଷ୍ମ ଛୁଟିରେ ଘରକୁ ଫେରୁଥାଏ । ହଠାତ୍ ପଛରୁ ଡ଼ାକ ଡ଼ାକି ଆସି ପୂର୍ବ ବାଲିଘର ଖେଳା ପରି ମାୟାର ଅଂଚଳକୁ ଟାଣି ଧରିଛି ]

ରାଜୁ : ମାୟା ..

ମାୟା : (ଆଡ଼ ହୋଇ ଠିଆ ହେଲା ଲାଜରେ । ଏତିକି ବେଳେ ସପନ ବେଙ୍ଗଂପତ୍ର ନେଇ ସେଇ ବାଟ ଦେଇ ଚାଲିଗଲା ବେଳେ ଦୁହିଁଙ୍କୁ ଦେଖିଛି । ]

ରାଜୁ : (ପଣଂତ ଛାଡ଼ିଦେଇ) ଆରେ, ତୁ ଏତେ ଲାଜକୁଳୀ ପାଲଟି ଗଲୁ । ସେଇ ଦିନର ସେଇ ଖେଳ କୌତୁକ ଏବେ ମଧ୍ୟ ମୋର ମନେ ପଡେ ମାୟା ।

ମାୟା : ଆଉ ମୁଁ...

ରାଜୁ : ତୁ ମଧ୍ୟ ମନେପଡ଼ୁ ମାୟା । ପଲ୍ଲୀ ଜୀବନର ସୁଖ, ଶାନ୍ତି, ଆନନ୍ଦ ସହରରେ ମିଳେନା । ମିଳେ କେବଳ ନଗ୍ନ ସଭ୍ୟତାର ଆଲୋକ, ଆଉ ଜୀବନଟା ସେଇଠି ଅନ୍ତଃସାର ଶୂନ୍ୟ ।

ମାୟା : ମୁଁ ତା' ହେଲେ ଯାଏ ରାଜୁବାବୁ ।

ରାଜୁ : ଯା,—ହେଲେ କଣ ଶୋର ଗ୍ରୀଷ୍ମ ଛୁଟିରେ ଗାଁକୁ ଫେରିଛି ବୋଧହୁଏ ।

ମାୟା : ଜାଣେନି... । ମୁଁ ତେବେ ଯାଏ ... ।

[ରାଜୁ ମୁଣ୍ଡ ହଲାଇ ସମ୍ମତି ଜଣାଇବା ପରେ ମାୟା ଚାଲିଗଲା । ରାଜୁ କ୍ଷଣିକ ପାଇଁ ମାୟାର ଯିବା ବାଟକୁ ଅନାଇ ବିପରୀତ ଦିଗରେ ଚାଲିଗଲେ । କିଛି ସମୟ ପରେ ରାଜୁଭାଇ, ରାଜୁଭାଇ ଡାକି ପ୍ରବେଶ କରନ୍ତି ଗୀତା । ବେଶ ଆଧୁନିକା । ପଛେ ପଛେ ପ୍ରବେଶ କଲା କିଶୋର]

ଗୀତା : (ଫେରି ଚାହିଁ) ଓଃ, ତୁମେ ?

କିଶୋର : ହଁ ଗୀତା, ମୁଁ । ମାନେ—ମୁଁ ସେଇ କିଶୋର । ରାଜୁବାବୁଙ୍କୁ ଆଜି ସ୍ୱପ୍ନ ଦେଖିଲ ବୋଧହୁଏ ? ହଁ, ସ୍ୱପ୍ନ ନୁହେଁତ ଆଉ କ'ଣ ? ନ ହେଲେ ସକାଳଟାରୁ ନଈ କୂଳକୁ ବୁଲିବାକୁ ଆସି ରାଜୁ ଡାକରେ— ।

ଗୀତା : ନା' ସେତ ଏଇ ବାଟ ଦେଇ ଷ୍ଟେସନରୁ ଫେରିଲେ । ମୁଁ ରାସ୍ତାରେ ଦେଖି ତାଙ୍କ ପଛେ ପଛେ ଆସୁଛି ।

କିଶୋର : I see, ତା' ପରେ—

ଗୀତା : (ନୀରବ)

କିଶୋର : ତା' ପରେ ରାଜୁ ସଙ୍ଗେ ହାତ ଛନ୍ଦା ଛନ୍ଦି ହୋଇ ସେଇ ପିଲାଟି ଦିନର ବାଲିଘର ତୋଳିବାକୁ ଦୌଡ଼ି ଆସିଥିଲ ନା ? Am I right ?

ଗୀତା : (ନୀରବ)

କିଶୋର : Excuse me, Gita, ଆଚ୍ଛା, ତୁମେ ତ କଟକରେ ରହ, ଆଉ ରାଜୁ ମଧ୍ୟ କଟକରେ ରହେ...

ଗୀତା : କିନ୍ତୁ...

କିଶୋର : କିନ୍ତୁ ଆଉ କ'ଣ ?

ଗୀତା : ମୁଁ ରହେ ହଷ୍ଟେଲରେ ।

କିଶୋର : ଓଃ, ତା' ହେଲେତ ଅସୁବିଧା ହେଉଥିବ ; ପାର୍କ, ପିକ୍‌ନିକ୍, ସିନେମା, ଥିଏଟର... ଆଉ—

ଗୀତା : ଅଭଦ୍ର... (ଫୁଲିଗଲେ)

କିଶୋର : ଗୀତା ! (ବିଦ୍ରୂପ ହସି) କିଶୋର ବଂଚି ଥାଉ ଥାଉ... ନା’ ନା’ କେବେ କରେଇ ଦେବନି । ଭାବିଛ, ସେଇ ବାଲିଘରର ବୋହୂ ଭଳି ତୁମେ ମଧ୍ୟ କିଶୋର ହାତରୁ ରାଜୁ ହାତକୁ ଚାଲି ଯିବ । ସ୍ୱୟଂବର ପିନା ମଣ୍ଡଳ ଯିବ କିନ୍ତୁ କୃଷ୍ଣ କ’ଣ ରୁକ୍ମିଣୀଙ୍କୁ ନନେଇ... (ହସିଛି)

—ଅଂଧାର—

## ଦ୍ୱିତୀୟ ଦୃଶ୍ୟ

[ପଲ୍ଲୀପଥ —ମକୁନ୍ଦ, ବୟସ ବାଇଶି ପାଖାପାଖି । ଗାଁ ଯାତ୍ରା ଦଳରେ ସେ ଭାଗନିଏ । ରାସ୍ତା କଡ଼ରେ ଠିଆହୋଇ ନିଜ ଅଂଶ ମୁଖସ୍ଥ କରୁଥାଏ ]

ମକୁନ୍ଦ : ଧନ୍ୟ ଧନ୍ୟ ତୁମେ ମର୍କଟ ପ୍ରଜାଗଣ,
ଧନ୍ୟ ତୁମ ବୀରତ୍ୱର ଅମର କାହାଣୀ ।
ଜନ୍ମ ମୋ ଧରାରେ ମାରିବାକୁ ରାବଣର ବଂଶ ।
ଜନ୍ମ ମୋର ମାରିବାକୁ ଅସୁର ସପାର ।
ମାରି ଶତ ଶତ ଅସୁର ବଳଙ୍କୁ—
ରକ୍ତ ନଦୀ ବୁହାଇ ମୁଁ ଦେବି ଭୂତଳରେ ।

(ଯାତ୍ରାଦଳପରି) ନାନା, ନାନା—ନାନା, ନାନା, ନା ।

(ପ୍ରବେଶ କଲା ଯୋଗୀ । ପ୍ରାୟ ସମବୟସ୍କ ଗ୍ରାମ୍ୟ ଯୁବକ । ବେଶ ଭୂଷା ଗାଉଁଲିପରି)

ଯୋଗୀ : (ପଛରୁ ପ୍ରବେଶି) ମକୁନ୍ଦାଇ, ଏ ମ-ମ-କୁନ୍ଦାଇ ।

ମକୁନ୍ଦ : ନୁହେଁ ମୁଁ ମକୁନ୍ଦାଇ, ଜନ୍ମ ମୋର ଏ ଧରାରେ ରାମଚନ୍ଦ୍ର ରୂପେ, କରିବାକୁ ଅସୁର ବଂଶର ନିଧନ ।

କନ୍ଥ —
ସୀତା ହରି ନେଲଦନୁ ସେ ଦୁଷ୍ଟ ରାବଣ ନ ଦଶଇ ବୁଦ୍ଧି ବାଟ
ମତେ । (ଚତୁର୍ଦ୍ଦିଗ ଦୃଷ୍ଟି) କାହିଁଗଲ ମୋର ଅଧାଜଳା ବଡ଼ି ।

ଯୋଗୀ : ଏ ମକୁନ୍ଦାଇ ।

ମକୁନ୍ଦ : (ରାଗିଯାଇ) କିଏ ତୁ ?

ଯୋଗୀ : ମୁଁ ଯଗ...

ମକୁନ୍ଦ : ଓ ତୁ ? କୁଆଡେ ଆସିଲୁ ବାପଧନ ।

ଯୋଗୀ : ଏଇମ... (ଲଜେଇଲା)

ମକୁନ୍ଦ : କରେ କହୁନୁ ?

ଯୋଗୀ : ଲ-ଲ-ଲଜ... ।

ମକୁନ୍ଦ : କରେ, ମୋ ପାଖରେ ତୋର ଫେରେ ଲଜ କଣ ? କହୁନୁ—

ଯୋଗୀ : ବାହାଘର —

ମକୁନ୍ଦ : କରେ, ତୋର ପୁଣି ବାହାଘର । ତୋର ବର ହେବାକୁ ଗଜା
ହେଲ କିଏ ?

ଯୋଗୀ ; ଯା'ମ ମକୁନ୍ଦାଇ, ତୋର ସବୁ ବେଳେ ସେଇକଥା ...ଏଇମ...

ମକୁନ୍ଦ : କରେ କହୁନୁ । ନ କହବୁତ ମତେ ପଛରୁ ଡ଼ାକ ମୋର ପାର୍ଟ
ଯୋଷାରେ ବାଧା ଦେଲୁ କା'ହିଁକି ? କରେ ଶ୍ରୀମତୀଙ୍କ ନାମ କଣ ?
କେଉଁ ଗାଁ ।

ଯୋଗୀ : ମୋ ବା' କହୁଥିଲ ମୋ କନ୍ୟା ପିଲର ନାଁ ମାୟା । ଏଇ ମ ଏଇ
ସୂ... ସୁନ୍ଦିପୁରୁ ଦନେଇ ବେହେରା ଝି...ଝି...

ମକୁନ୍ଦ : ମାୟା ... !!!

ଯୋଗୀ : ହଁ, ମ ତା' ନା'ତ କୁଆଡ଼େ ସେଇୟା ।

ମକୁନ୍ଦ : ତୁ ସିଧା ସିଧା ପଟର ମନା କରାଦେ । କରେ-ତାକୁ ତୁ ବାହାହେବୁ ?
ମାୟାକୁ ବାହାହେଲେ ତୁ ପୁରପୁର ବାୟା ହୋଇଯିବୁ ।

ଯୋଗୀ : ସତେ ନା' କଣ ?

ମକୁନ୍ଦ : ମୁଁ ପରା କହୁଛି ତୁ ମନାକରିଦେ । ବୋଉକୁ କହିବୁ ମୁଁ ସେଠି ବାହା ହେବିନି । କରେ, ଭୋରତ ଯାତ୍ରା ଦଳରେ ପୁରୁଷ ପାର୍ଟ କରିବାର ଯୋଗ୍ୟତା ନାହିଁ ବୋଲି ଭତେ ସବୁବେଳେ ସ୍ତ୍ରୀ ପାର୍ଟ ଦିଆଯାଏ । ତୁ ପୁଣି ବାହାହେବୁ ?

ଯୋଗୀ : କେଡ଼େ ସୁନ୍ଦର ବାହାଘର ହୋଇଯାଇ ଥାଆନ୍ତା, ବାଣ ଫୁଟି ଥାଆନ୍ତା, ଭୋଜି, ଭାତ ଆଉ କେତେ କେତେ ଆଳୁ ଭ-ଭଜା ହୋଇଥାନ୍ତା, ହେଲେ ମକୁନ୍ଦାଇ ତୁ ସବୁ ଭଣ୍ଡୁର କରିଦେଲୁ । ଏଣେ ତୋ କଥା ନ ଶୁଣିଲେ ପାର୍ଟ ଦବୁନି । ତେଣେ ବାହା ହବାକୁ ମ-ମ-ନଟା ଥି... ।

ମକୁନ୍ଦ : ମନ ଥିଲା । ତା' ହେଲେ ତୁ ଯିବୁନି ଦେଖୁଛୁ । ବୁଝିଲୁ ଯୋଗୀ । ନଇଲେ ଏଇ ସଙ୍ଗେ ସଙ୍ଗେ ଆରମ୍ଭ ହୋଇଯିବ ।

ଯୋଗୀ : କ'ଣ ।

ମକୁନ୍ଦ : ଯୁଦ୍ଧ ।(ପୂର୍ବପରି ଅଭିନୟ କରି)ଚକ୍ରଧର, ଏ'ସବୁ ଚକ୍ରାନ୍ତ ତୋହର ।
ଶୁଣ ସର୍ବେ ଦଶ ଦିଗ ପାଳ । ଶୁଣ ସର୍ବେ ପୁରବାସୀଗଣ ।
ଆଜି ଏହି ଅର୍ଜ୍ଜୁନ ପ୍ରତିଜ୍ଞା—
ସପ୍ତରଥି ମିଳି ଯେବେ—
ମାରିଲେ ଅର୍ଜ୍ଜୁନ କୁମରେ,
ନଥିଲକ, ତୁମ୍ଭରେ କାଣ୍ଡଜ୍ଞାନ ଆହା—
ହେଲେ ମନେ ରଖ ତୁମେ ଆଜି—
ଅସ୍ତାଚଳେ ଅସ୍ତ ନ ଭଜନ୍ତି ପ୍ରଭାକର,
ଜୟଦ୍ରଥ ମୁଣ୍ଡକୁ ମୁଁ କରି ଖଣ୍ଡ ଖଣ୍ଡ
ଲୋଟାଇବି ଧରଣୀ ବକ୍ଷରେ ।
ନତୁବା,
ପ୍ରାଣ ମୋର ବିସର୍ଜନ ଦେବି ଅନଳରେ ।
ଲୋପ ହେବ ଅର୍ଜ୍ଜୁନର ନାମ ଧରଣୀ ବକ୍ଷରୁ
ଚିରଦିନ ପାଇଁ—
ଗାଣ୍ଡିବ ଧନୁକ ଆଉ ଶୋଭିବ ଅର୍ଜ୍ଜୁନ କନ୍ଧରେ ।

ଯୋଗୀ : ବୋଉ ଲୋ । (ମକୁର ଧନୁମରା ଅଭିନୟ ଦେଖି ଯୋଗୀ ପଛଗୁଞ୍ଜା ଦେଇ ଚାଲିଗଲା)

ମକୁନ୍ଦ : (ଫେରି ଚାହିଁ) ଚାଲିଗଲା । ଆଚ୍ଛା ଠିକ୍ ଅଛି । ଏଇ ଚାଲିଲି ତୋ ପଛେ ପଛେ ଶର । ଆକାଶ, ପାତାଳ ଯେଉଁଠି ଛପି ରହିଲେ ମଧ୍ୟ ମୋ ଶର ଅବ୍ୟର୍ଥ । ଆଉ ବିଳମ୍ବ କାହିଁକି ? (ଚାଲିଲା ପଛେ ପଛେ)

## ତୃତୀୟ ଦୃଶ୍ୟ

[କୁଟୀର—ଦନେଇ ବେହେରାଙ୍କ ଘର । ହାତରେ କୋଉଟ । ଜାଲଟିଏ ଧରି ବୁଣୁଥିଲେ । ଭିତରୁ ଡ଼ାକିଲା 'ମାୟା']

ମାୟା : ବାପା— ।

ଦନେଇ : କ'ଣ ମା ?

ମାୟା : (ପ୍ରବେଶ) ଆଜି କ'ଣ କିଛି ବଜାର ସଉଦା ଆଣିବନି ? ବେଳ ଆସି କେତେ ହେଲାଣି । ତମେ ଖାଇଲେ ନଈକୁ ଜାଲ ଧରି ଯିବ ପରା ।

ଦନେଇ : ହଁରେ ମା ଯା'ଚୁ ଚୁଲିଟା ଧରା । ମୁଁ ନେଇ ଆସୁଛି । ( ଜାଲଟି ରଖିଦେଇ ଉଠିଲେ । ମାୟା ଭିତରକୁ ଚାଲିଗଲା । ପ୍ରବେଶ କଲେ ରାଜୁ । ହାତରେ କେଇଟା ବହି )

ରାଜୁ : ନମସ୍କାର ମଉସା ।

ଦନେଇ : ଦୀର୍ଘାୟୁଷ୍ମାନ୍ ହୋଇଥା ବାପା । ସହରରୁ କେବେ ଆସିଲ । ବାପା କହୁଥିଲେ ରାଜୁ ଗ୍ରୀଷ୍ମ ଛୁଟିରେ ଆସିବ ବୋଲି ।

ରାଜୁ : କାଲି ଫେରିଲି ମଉସା । ଭାବିଲି ଥରେ ତମ ସହିତ ଦେଖାକରି ଯିବି । ଆଉ ସବୁ ଭଲତ ମଉସା ।

ଦନେଇ । ଆମ କଥା ପଚାରୁଛ ବାପ ? କି ରାଇଜ ହେଲା ଯେ, ବଜାର ଦର ହୁହୁ ହୋଇ ବଢ଼ିଚାଲିଲା । ପେଟ ପୋଷ, ନାହିଁ ଦୋଷ-ବୋଲି ଖାଉଛୁ

ଆଉ ବଂଶକୁ । ଭଲ ଆଉ କ'ଣ । ବଡ ବାପା, ଠିଆ ହେଲ ଯେ, ଆରେ ମା' ମାସ୍ଟ୍ରା ।

ରାଜୁ : ନା ମଉଷା ଥାଉ । ମୁଁ ଆସିଥିଲି ଏଇ ମାସ୍ଟ୍ରା ପାଖକୁ । ତା' ପାଇଁ କେଇ ଖଣ୍ଡ ବହି ଆଣିଥିଲି ଯେ ।

ଦନେଇ : ବହି... ?

ରାଜୁ : ହଁ ମଉଷା, ମାସ୍ଟ୍ରା ଯିନା ସ୍କୁଲକୁ ଯାଇ ପାଠ ପଢ଼ିବନି ହେଲେ ଘରେ ରହି ପାଠ ପଢ଼ିଲେ କ୍ଷତି କ'ଣ ? ମୁଁ ତ ପ୍ରତି ଛୁଟିରେ ଗାଁକୁ ଆସୁଛି ।

ଦନେଇ : (ହସି) ପାଠ ପଢ଼ିବ । ଯିଏ ଜନମ ତ ହାଣ୍ଡି ଶାଳକୁ । ଖାଲି କେଉଁଠି ଭଲ ପାତ୍ରଟିଏ ଦେଖିଲେ ଏ ବର୍ଷ ଉଠେଇଦେବ ବୋଲି ଭାବୁଛୁ ।

ରାଜୁ : କେଉଁଠି ବରପାତ୍ର ଦେଖିଲଣି ମଉଷା । ମାସ୍ଟ୍ରାର ମନ ପାଉଛୁ ତ ?

ଦନେଇ : ମାସ୍ଟ୍ରାର ମନ କ'ଣ ପାଇବ ବାପ, ଖାଲି ତୁମମାନଙ୍କ ମନ ପାଇଲେ ହେଲା ।

ରାଜୁ : ଆମ ମନ...

ଦନେଇ : ନାହିଁ ଆଉ କ'ଣ । ମୁଁ ମଲା ବାପି ତା'ର ଆଉ କିଏ ଅଛୁ କହିଲ ବାପ । ତୁମେମାନେ ହିଁ ତା'ର ସାହାଭରସା ।

ରାଜୁ . କେଉଁଠି କଥା ଠିକ୍ ହେଲଣି ନା' କଣ ?

ଦନେଇ : ଏଇ ପାଖ ଗାଁ ମଧୁ ବେହେରା ପୁଅ ଯୋଗୀ ସହିତ । ଆମ ପନ୍ଥାରେ ତ ଆଉ ଶିକ୍ଷା ଦୀକ୍ଷା ଦେଖିଲେ ହେବନି ।

ରାଜୁ : ଛି, ଛି, ସେଇଟା ହାତରେ । ତା' ଅପେକ୍ଷା ତୁମ ଘର ପାଖରେ ତ ନଈ ଅଛି । ସେଇଠି ଭଉଣୀକି ଚପି ଭସାଇ ଦେଉନା ।

ଦନେଇ . କ'ଣ ଭଲ ହେବନି ବାପ ?

ରାଜୁ : ଭଲ କାହିଁକି ହେବନି । ହେଲେ ସେଇଟା ଗୋଟେ ମଣିଷ ?

ମାସ୍ଟ୍ରା : ଆଉ କ'ଣ ମତେ ପଶୁ ବୋଲି ଭାବିଲ ? (କହିକହି ପ୍ରବେଶ କଲା, ରାଜୁକୁ ଦେଖିନ ପାରି)

ରାଜୁ : (ମାଧୁରୀକୁ ନଦେଖି) ପଶୁ ନୁହେ ଆଉ କ'ଣ ? ମାଇଚଆଙ୍କ ପରି ସବୁବେଳେ ନାଚ ଦଲରେ ମିଶି ନାଚକରବ । ହେଣ୍ଡା', ହେଣ୍ଡା, ହୋଇ ବୁଲିବ ।

ମାଧୁରୀ : ରାଜୁ ଭାଇ... ।

ରାଜୁ : Sorry ! ତୁ କେତେବେଳେ ଆସିଲୁ ?

ଦଦେଇ : ଆଚ୍ଛା ମା' ତୁମେ ଦୁହେଁ ବସି ଗପ କରୁଥା' କ, ମୁଁ ଏଇ ବଜାର ସଉଦା କରି ଆସୁଛି । (ଚାଲିଗଲେ)

ମାଧୁରୀ : ବସ, ରାଜୁ ଭାଇ । ଏମିତ ଠିଆ ଠିଆ କ'ଣ ଫେରିଯିବ ?

ରାଜୁ : ଫେରିଯିବାକୁ ହିଁ ହେବ । ହେଲେ ମାଧୁରୀ...

ମାଧୁରୀ : ଉଁ... । ଆଚ୍ଛା, ରାଜୁ ଭାଇ, ଦୁଇଦିନ ହେଲା ଗାଁକୁ ଆସିଲଣି, ଅଥଚ ମୋ କଥା ଆଜି ମନେ ପଡ଼ିଲା ; ଘରେବସି ପାଠ ପଢୁଥିଲ ନା' ଆଉ କିଛି ଭାବୁଥିଲ ?

ରାଜୁ : ହଁ, ଏଇ ଭାବୁଥିଲି ତୋର କଥା । ସତରେ ତୁ ଏମିତ ମୋ କଥା ଭୁଲିଯିବୁ ବୋଲି ମୋର ଧାରଣା ନଥିଲା । ମୋର ସବୁ କଳ୍ପନା ଶେଷରେ କ'ଣ......

ମାଧୁରୀ : କଥାଟା ଖୋଲି ନ କହ...

ରାଜୁ : କ'ଣ ଆଉ କହିବ । ଆଚ୍ଛା ମାଧୁରୀ, ସତରେ କ'ଣ ତୋ' ବାହାଘର...

ମାଧୁରୀ : ତମେ କେମିତ ଜାଣିଲ ?

ରାଜୁ : ମଉସା କହୁଥିଲେ (ମାଧୁରୀକୁ ନୀରବ ଦେଖି) ସତରେ କଣ ତୁ ସେଠି ବାହା ହେବୁ ମାଧୁରୀ ?

ମାଧୁରୀ : ବାହାତ ହେବାକୁ ହେବ । ଯାହାର ହେଲେ ଜଣକ ହାତ ନ ଧରିଲେ ସ୍ତ୍ରୀ ଲୋକ ସଂସାରରେ ମୁଣ୍ଡଟେକି ଚାଲିପାରେନା ବୋଲି ତୁମ ପୁରୁଷଜାତି ଶାସ୍ତ୍ର ପୁରାଣରେ ଲେଖିଛନ୍ତି ନା ?

ରାଜୁ : ତା' ବୋଲି ଯୋଗ୍ୟ ଅଯୋଗ୍ୟ ନ ଦେଖି ହାତଧରି ଚାଲିଲେ ଝୁଣ୍ଟି ପଡ଼ିବାର ସମ୍ଭାବନା ବେଶି ।

ମାଧୁରୀ : (ଆଖିରେ ଲୁହ) କିନ୍ତୁ ମୋ ହାତଧରି ଚାଲିବାକୁ ରାଜି ହେବ କିଏ ? ତମେ କ'ଣ ସତରେ ସବୁ ଭୁଲିଗଲ ରାଜୁ ଭାଇ ! ସେଇ

ନନ୍ଦକୁଲର ବାଲିଖେଳ, ମୁଁ ବୋହୂ ସାଜି ଯେତେବେଳେ ତୁମ ଘରକୁ ଆସେ, ତମେନା ମୋ ମୁକୁଳା ମୁଣ୍ଡ ଓଢ଼ଣରେ ଢାଙ୍କି ଦେଉଥିଲ...... (ଆଉ କିଛି କହିବାକୁ ଯାଇ କହିପାରିଲନି ସେ)

ରଜୁ : ଅଉ ସେଇ ଓଢ଼ଣା ତଳୁ ମୁଁ ତୋର ଆଖି ସହିତ ମୋ ଆଖି ମିଳାଇ ଯେଉଁ ସ୍ୱପ୍ନ ଦେଖିଥିଲି ସେ ସବୁ କ'ଣ ଛଳନା ନା... ?

ମାଧୁ : ସବୁ ଛଳନା ହୋଇପାରେ ରଜୁଭାଇ। ସେ ବାଲିଘର ନାହିଁ ଯେତେବେଳେ, ତୁମ ମନର ବାଲିଘର ଯେ' ମଝିରେ ନ ଯାଇଥିବ ଏ କଥା କିଏ କହିବ ? ମୁଁ ରୋସେଇ ଦେଉଛି ଘରର ଝିଅ। ତମ ସମାଜ ଯେତେବେଳେ ଗୋଟାଏ ମଣିଷ ଜାତି ଭିତରେ ପଥର ପାଚେରୀ ତୋଳି ଦେଇଛି। ଆଉ ତମେ କ'ଣ ତାକୁ ଭାଙ୍ଗି ଦେଇ ପାରିବ ?

ରଜୁ : ମୋ ସ୍ୱପ୍ନ ଦିନେ ସତରେ ପରିଣତ ହେବ। ଯେଉଁଠି ମନ ମନା ମାନେନି, ସେଇଠି ସମାଜ କ'ଣ କରିବ ? ହେଲେ, ସେଥିପାଇଁ ନିନ୍ଦା, ଅପବାଦ ଯାହା ସବୁ ଆସିବ—ତୁ ପାରିବୁ ଟି ମାଧୁ ?

ମାଧୁ : ତୁମ ପାଇଁ ମୁଁ ସବୁ କିଛି ପାରିବି ରଜୁଭାଇ। ହେଲେ ବାସି ଫୁଲ ପରି ମତେ ହତାଦର କରି ଶେଷରେ ଠେଲି ଦେବନି ତ ? (ଦୁଃଖରେ)

ରଜୁ : ବାସି ଫୁଲପରି ଠେଲି ଦେବା ଆଗରୁ, ଫୁଲର ମହକକୁ କ'ଣ କେହି ଭୁଲିଯାଏ ? ଛି, ଆଜିଠୁଁ ଏମିତି ଭାଙ୍ଗି ପଡ଼ିଲେ ଆମେ ଏ ସମାଜର ଆଖିରେ ଜଳିଯିବା ଛଡ଼ା ଆଉ କିଛି ନୁହେଁ। ତୁ ମତେ ଖାଲି କଥା ଦେ ମାଧୁ ମୁଁ...... ।

ମାଧୁ : ରଜୁଭାଇ ..... ।

ରଜୁ : ମାଧୁ... (ରଜୁର ପାଦତଳେ ମୁଣ୍ଡ ଲଗାଇଲା)

—ଅଂଧାର—

## ଚତୁର୍ଥ ଦୃଶ୍ୟ

[ପଲ୍ଲୀପଥ—ମକୁନ୍ଦ ପାର୍ଟ ମୁଖସ୍ଥ କରିବାରେ ବ୍ୟସ୍ତ ଥାଏ]

ମକୁନ୍ଦ : ଏଇକି ସେ ତବ ଦିବ୍ୟ ସୁନ୍ଦର ରୂପ, ହେ ପ୍ରାଣେଶ୍ୱର ମମ ! ଯା'ର ନିତ୍ୟ ଦରଶନ ପାଇଁ, ମୁଁ ଚିନ୍ତା କରେ ଅନୁକ୍ଷଣ ।

ଗୀତା : (ପ୍ରବେଶି) ମକୁନ୍ଦାଭାଇ, ଏ ମକୁନ୍ଦାଭାଇ— ।

ମକୁନ୍ଦ : କାହିଁକି ଏ ଘଡ଼ଘଡ଼ି ଶବ୍ଦେ କଲ ପ୍ରେମ ସମ୍ଭାଷଣ । ଯାଉଛି ମୁଁ ରଣକ୍ଷେତ୍ରେ ଦିଅ ଶୀଘ୍ର ତବ ପରିଚୟ ।

ଗୀତା : ଚିହ୍ନିପାରୁନ ମକୁନ୍ଦାଭାଇ, ମୁଁ ପରା ଗୀତା ।

ମକୁନ୍ଦ : କେମିତି ଗୀତ ଗାଉଛ, ଗାଇଲ ।

ଗୀତା : ମୁଁ ଗୀତ ନୁହେଁ, ଗୀତା ।

ମକୁନ୍ଦ : ଓଃ, ତୁ ଗୀତା । କୁଆଡ଼େ ମା' ଟଙ୍ଗ ଟଙ୍ଗ ହୋଇ ବାହାରି ପଡ଼ିଲୁ ।

ଗୀତା : ଟିକେ ନଈକୂଳକୁ ଯାଉଛି ।

ମକୁନ୍ଦ : କାହିଁକି ମା ?

ଗୀତା : ବୁଲିବାକୁ । ଘରେ ବସି ଆଉ କ'ଣ କରନ୍ତି କହିଲ ? ଛୁଟିରେ ଗାଁକୁ ଫେରିଲେ ପାର୍କ, ପିକ୍‌ନିକ୍, ସିନେମା, ଥିଏଟର କୌଣସିଟିର ସୁବିଧା ନାହିଁ । ଘରେ ଦିନସାରା ବସି ବସି ବୋର୍ ଲାଗୁଛି । ଶୀଘ୍ର କଟକ ଫେରିଗଲେ ରକ୍ଷା ।

ମକୁନ୍ଦ : କାହିଁକି ଘରେ ବସି ରନ୍ଧାବଢ଼ା କରୁନୁ ।

ଗୀତା : ଇସ୍, ରନ୍ଧାବଢ଼ା ନା' ଆଉ କଛି । ବୁଝିଲ ମକୁନ୍ଦାଭାଇ ତମେ ଟିକିଏ ଗାଁରେ ରହି କୂପମଣ୍ଡୁକ ପାଲଟି ଗଲଣି । ଥରେ ସହରକୁ ବୁଲି ଦେଖିବ, ସେଠି ଜୀବନଟା ପ୍ରତି କ୍ଷଣରେ ନୂଆ । ଆଃ କି ଫୂର୍ତ୍ତି ! କି ଆନନ୍ଦ !!

ମକୁନ୍ଦ : ହଇଲେ ଗୀତା ! ସହରରେ ସମସ୍ତେ ଏମିତି ଲଙ୍ଗଳା ହୋଇ ବୁଲନ୍ତି ? ସହରରୁ ଗାଁକୁ ଆସିଲେ ସେଇ ଅର୍ଦ୍ଧନଗ୍ନ ବେଶ ବଦଳାଅ । ସେଇଟା ଯିନା ସହର, ଏଇଟାତ ଆଉ ସେଇଆ ନୁହଁ ?

ଗୀତା : ଇସ୍ କି ସଙ୍କୀର୍ଣ୍ଣ ତୁମମାନଙ୍କ ମନ । ଏମିତି କେତେ ଜଣଙ୍କ ପାଇଁ ପରା ଆମ ନାରୀଜାତିଟା ଆଗେଇ ପାରୁନି ।

ମକୁନ୍ଦ : ଆଗେଇ ଯିବୁ, ଯାଉନୁ । ମୁଁ କ'ଣ ମନା କରୁଛି ? ଆମେ ସବୁ ସିନା ଗାଉଁଲୀ ହେଇଗଲୁ, ହେଲେ ତମେ ସବୁ ପାଠପଢ଼ି ଓଡ଼ିଆ ସଂସ୍କୃତିକୁ ବଞ୍ଚେଇ ରଖ ମା । ଏ ଅବେଳରେ କୁଆଡ଼େ ବାହାରିଲୁ ?

ଗୀତା : ନଈକୂଳକୁ । ରାଜୁବାବୁଙ୍କ ସମସ୍ତ ଜ୍ଞାନ ମଧ୍ଯ ମୋଟେ ନାହିଁ । ଆଚ୍ଛା ମୁଁ ଆସୁଛି । ବାଇ, ବାଇ... ।

ମକୁନ୍ଦ : ଖାଇ, ଖାଇ (ଅନୁକରଣ କରି) ଖାଇ, ଖାଇ... (ଗୀତାର ଯିବା ବାଟକୁ ଅନାଇ ରହିଥିଲା । ପ୍ରବେଶ କଲା ମାୟା । ବିପରୀତ ଦିଗରୁ ପାଣି ମାଠିଆ ନେଇ)

ମାୟା ; ମୁଁ ଜାଣେ ସବୁ... ।

ମକୁନ୍ଦ : କ'ଣ ଜାଣୁ ? ତୋ ପାଇଁ ସବୁ ରାବଣ ପାର୍ଟିଟା ମୁଖସ୍ଥ କରୁଛି ।

ମାୟା : ତମେ ତମର ମୁଖସ୍ତ କରୁଥା, ମୁଁ ମୋର ଚାଲିଲି । (ଚାଲି ଯାଉଥିଲା)

ମକୁନ୍ଦ : (ପଛରୁ) ଏ ମାୟା, ଶୁଣ । ଗୋଟେ କଥା ପଚାରିବ କହିବୁ ?

ମାୟା : କ'ଣ ?

ମକୁନ୍ଦ : ମକୁନ୍ଦାଇ ତୋର ମରିଗଲା ?

ମାୟା : ଛି, ଅଶୁଭ କଥା ଗୁଡ଼ାକ...

ମକୁନ୍ଦ : ମକୁନ୍ଦାଇ ତୋର ବଞ୍ଚିଥିଲେ କ'ଣ ଏ କଥା ହୋଇଥାନ୍ତା ?

ମାୟା : କ'ଣ କିଛି ନ କହି ଖାଲି ଏଣ୍ଡୁ ତେଣ୍ଡୁ ଗୁଡ଼ାଏ... ।

ମକୁନ୍ଦ : ଯୋଗୀ, ସେ ପୁଣି କେବେଠୁଁ ପୁରୁଷ ହେଲା ?

ମାୟା : କାହା କଥା କହୁଛ ଖାଇ ।

ମକୁନ୍ଦ : କାହା କଥା ଆଉ କହିବ ? ଜମ୍ଭ ଯାହା ହେବ ମୁଁ ମଲାପରେ । ମୁଁ ବଞ୍ଚି ଥାଉ ଥାଉ ନୁହେ ।

ମାୟା : କ'ଣ କହୁଛ ତୁମେ, ମୁଁ କିଛି ବୁଝି ପାରୁନ ।

ମକୁନ୍ଦ : ବୁଝି ପାରୁନୁ, ବୁଝିବୁ କୁଆଡ଼ୁ । ତୋର ବୁଝିବା କ'ଣ ଦରକାର ? ତୋର ସିନା ପେଟର ଖାଇ ନାହିଁ, ହେଲେ ତୋ ମକୁନ୍ଦାଇ କ'ଣ ମରିଯାଇଥିଲା ? ତାକୁ ପଦେ ହେଲେ କେହି ପଚାରି ପାରିଲ ନାହିଁ ?

ମାୟା : କଥା କ'ଣ ମକୁନ୍ଦାଇ । କଥା ନାହିଁ, ବାର୍ତ୍ତା ନାହିଁ, ଖାଲି......

ମକୁନ୍ଦ : ଆଚ୍ଛା ମାଷ୍ଟ୍ରା: ତୋର ବାହାଘର କୁଆଡ଼େ ସୂର୍ଯ୍ୟପୁର ମଧୁ ବେହେରା ପୁଅ ଯୋଗୀ ସହିତ ହେଉଛି ।

ମାଷ୍ଟ୍ରା : କିଏ କହିଲା ?

ମକୁନ୍ଦ : ମୋର କ'ଣ କାନ ନାହିଁ । ଏ କଥା ଯଦି ସତ ହୋଇଥାଏ ନା' ହିଁ... ଆରେ ଆରେ ଏମାନେ ସବୁ ମକୁକୁ ପିଲା ମନେ କରିଛନ୍ତି ପରା । ଅଚ୍ଛା ତୁ ଯା, ମୁଁ ସେକଥା ବୁଝିବି ।

ରାଜୁ : (ପ୍ରବେଶି) କ'ଣ ମକୁନ୍ଦ, ସବୁ ଭଲତ ?

ମକୁନ୍ଦ : କିଏ ? ରାଜୁବାବୁ ନମସ୍କାର । ଆରେ ହଜିଲା ବାଳଦଟ ଖୋଜିଲା ଠେଇଁ । ମୁଁ ଏଇନେ ତୁମ କଥା ମାଷ୍ଟ୍ରାକୁ ପଚାରିବି ବୋଲି ଭାବୁଥିଲି । (ରାଜୁକୁ ଦେଖି ମାଷ୍ଟ୍ରା ଲାଜେଇ ଠିଆ ହୋଇଥାଏ । ମକୁନ୍ଦ ଦୁହିଙ୍କୁ ଲକ୍ଷ୍ୟ କରୁ କରୁ) ତତେ ପରା କହିଲି ଘରକୁ ଯା । (ମାଷ୍ଟ୍ରା ଚାଲିଗଲା)

ରାଜୁ : ମୁଁ ଯାହା ଶୁଣିଲି, ସେ କଥା କ'ଣ ସତ ?

ମକୁନ୍ଦ : ସତ ବୋଲିତ ଶୁଣିଲି । ହେଲେ ସ୍ୱୟମ୍ବର ପୂର୍ବରୁ ସୀତା ରାମଙ୍କ ରୂପରେ ମୁଗ୍ଧ ହୋଇଗଲେଣି । ଆଉ ଶିବଧନୁର ମୂଲ୍ୟ କ'ଣ ?

ରାଜୁ : ଶିବଧନୁ ନ ଥିଲେ ସ୍ୱୟମ୍ବରର ମୂଲ୍ୟ ନଥାନ୍ତା ମକୁନ୍ଦ । ଠିକ୍ ଅଛି । ତୁ ଖାଲି ମତେ ଟିକିଏ ସାହାଯ୍ୟ କର । ମାଷ୍ଟ୍ରାକୁ ମୁଁ... ।

ମକୁନ୍ଦ : ବଡ ଲୋକର ପୁଅ ତମେ ବାବୁ । ପରଦା ଆଢୁଆଳରେ ତୁମେ ବଢ଼ି ଆସିଛ । ଅଯନା ଗଦାରେ ଫୁଟିଥିବା ଫୁଲଟିର ମୋହରେ ତୋଳି-ଆଣି ପୁଣି ଅଯନାରେ ଫିଙ୍ଗି ଦେବନିତ ?

ରାଜୁ : ପଙ୍କରୁ ଜନ୍ମେ ବୋଲି ତା'ନାଁ ପଙ୍କଜ । ସେତ ପୁଣି ଦେବ ଦେବୀଙ୍କ ମଥାରେ ଶୋଭାପାଏ । ତୁ କ'ଣ ତୋ ରାଜୁବାବୁକୁ ଭୁଲିଗଲୁ ? ରାଜୁ ବଡ଼ ଘରର ପୁଅ ହେଲେ ମଧ୍ୟ ବଡଲୋକ ଆଭିଜାତ୍ୟ ତା' ଠାରେ କେବେ ପାଇଛୁ ? ରାଜୁ ବଡଘରେ ଜନ୍ମ ହେଲେ ମଧ୍ୟ ଗରିବଙ୍କ ଇଜ୍ଜତକୁ କଣେଇ ମନେ କରି ଖେଳିବା ଶିଖିନି ମକୁ ।

ମକୁନ୍ଦ : ଆଉ କିଛି କୁହନା ବାବୁ ତୁମେ ଯାଅ । (ରାଜୁ ଚାଲିଗଲା) ହଉ, ମୋର କ'ଣ ନାରଦ ପ ଟଁଠା ମନେ ନାହିଁକି । ନାରାୟଣ! ନାରାୟଣ !

## ପଞ୍ଚମ ଦୃଶ୍ୟ

[କକ୍ଷ—ଜମିଦାର ଦୀନବନ୍ଧୁ ମହାନ୍ତିଙ୍କ ବୈଠକଖାନା । ଅତ୍ୟାଧୁନିକ ନ ହେଲେ ମଧ୍ୟ ଜମିଦାରୀ ଢଙ୍ଗରେ ସୁସଜ୍ଜିତ । ଗୋଟିଏ ଆସନରେ ରାଜୁ ଓ ଅନ୍ୟ ଏକ ଆସନରେ ଦୀନବନ୍ଧୁ ବସି କଥାବାର୍ତ୍ତା କରୁଥିଲେ]

ଦୀନବନ୍ଧୁ : ତୋର କଲେଜ କେବେ ଖୋଲୁଛି ବାପ ?

ରାଜୁ : ଏଇ ଜୁଲାଇ ପହିଲାରେ । ମୁଁ ଭାବୁଛି ବାବା, ଗଲାବେଳେ ମୁଁ ସପନକୁ ସାଙ୍ଗରେ ନେଇଯିବି ।

ଦୀନବନ୍ଧୁ : କାହିଁକି, ତୋର ସେଇଠି କିଛି ଅସୁବିଧା ହେଉଛି ?

ରାଜୁ : ନାହିଁ, ଅସୁବିଧା ନ ହେଲେ ମଧ୍ୟ, ପାଖରେ କିଏ ଜଣେ ନ ରହିଲେ ବଡ଼ ଅଡୁଆ ଅଡୁଆ ଲାଗୁଛି । ମୁଁ ଭାବୁଛି ବାବା, ସପନ ଗଲେ ଖୁବ୍ ଭଲ ହୁଅନ୍ତା ।

ଦୀନବନ୍ଧୁ : ତୋର ଯାହା ଇଚ୍ଛା ବାପ । ହେଲେ ବାପ, ପଢ଼ାପଢ଼ିରେ ମନ ଦେବୁ । ମୋର ହୋଇ ଆଉ କିଏ ଅଛି କହିଲୁ ? ତୋର ପାଇଁ କେବଳ ବଞ୍ଚି ରହିଛି । ତୋତେ ହାତକୁ ଦୁଇ ହାତ କରିଦେଲେ ମୁଁ ଶାନ୍ତିରେ ମରିପାରିବି ।

ରାଜୁ : ଛି, ବାବା ଏ ସବୁ କ'ଣ କହୁଛନ୍ତି ।

ଦୀନବନ୍ଧୁ : ମଣିଷ ଜୀବନ ପାଣିଫୋଟକା...ବାପ । କ'ଣ ନଥିଲା ଏ ଘରେ । ଜମିଦାରୀ ଗଲା, ତୋ ମା' ମଲେ । ମା'ଙ୍କ ମୃତ୍ୟୁ ବେଳର ସେଇ ଦୁଇପଦ କଥା ଏବେ ମଧ୍ୟ ମୋ କାନରେ ପ୍ରତିଧ୍ୱନିତ ହେବାରେ ଲାଗିଛି । "ରାଜୁକୁ ମଣିଷ କରିବ, ତା' ପରେ ଯାଇ ତୁମର ଛୁଟି ।" (ଆଉ କିଛି କହି ପାରିଲେନି)

ଦୀନବନ୍ଧୁ : ହେଲେ ସପନ, ପିଲଟା ପଢ଼ାପଢ଼ି କରୁଛି··· ।

ସପନ : ପାଠ ଆଉ କେତେ ଦିନ ପଢ଼ିବେ ? ପାଠ ପଢ଼ି ତ ଆଉ ଚାକିରି କରିବେନି । ବାହାଘର ପରେ କ'ଣ ପାଠ ପଢ଼ିଲେ ମାରା ହୋଇ ଯାଉଛି ? ହେଲେ ବାବୁ ମୁଁ ତ ଆସି ବୁଢ଼ୀ ହେଲିଣି । ଆଉ କେତେ ଦିନ ବା' ବଞ୍ଚିବି ? ସାନ ବାବୁଙ୍କ ବାହାଘରଟା ଦେଖି ହେଲେ ମରିଥାନ୍ତି ।

ଦୀନବନ୍ଧୁ : ତା'ର ଯାହାଇଚ୍ଛା ସପନ...(କହୁକହୁ ଚାଲିଗଲେ)

ରାଜୁ : ସପନ, ତୁ ମୋର ବାହାଘର କଥା ଭାବି ଭାବି ପାଗଳ ହେବୁ ନା' କଣ ? କେଇଟା ଦିନ ଅପେକ୍ଷା କର । ତୋ ପାଇଁ ସୁନ୍ଦରୀ ବୋହୂଆଣୀଟିଏ ଆଣିଦେବି ।

ସପନ : ନା ବାବୁ, ମୁଁ ଶୁଣିଛି ପିଲମାନେ କୁଆଡେ ସହରରେ ପାଠ ପଢ଼ି ଖରାପ ହୋଇଯାନ୍ତି । ତୁମେ ମନା କରନି । ଏ ଘରର ସୁଖ ଦୁଃଖ ସବୁ ତ ଦେଖିଲି । ଖାଲି ସେତକ ଦେଖିଲେ ମୁଁ ଛୁଟି ନିଅନ୍ତି ।

ରାଜୁ : ବ୍ୟସ୍ତ ହେବାର କ'ଣ ଅଛି ସପନ । ସମୟ ଆସିଲେ ଆପେ ଆପେ ହେବ ।

ସପନ : ସମୟ କ'ଣ ଆସିନି କି ବାବୁ । କନ୍ଦ କୁଳ ହୋଇଥିଲେ ତ ପଚିଶି ପିଲର ବାପ ହୁଅନ୍ତଣି ! ତୁମେ କଟକ ଚାଲିଗଲ ପରେ ବାବୁ ମତେ ସବୁବେଳେ ସେଇକଥା କୁହନ୍ତି । ମତେ ଏସବୁ କଥା ଶୁଣି ବହୁତ କଷ୍ଟ ଲାଗୁଛି ।

ରାଜୁ : ତତେ ଏ ସବୁ ଆଉ ଶୁଣିବାକୁ ପଡ଼ିବନି ସପନ । ମୁଁ ଏଥର କଟକ ଗଲାବେଳେ ମୋ ସାଥିରେ ନେଇଯିବି ।

ସପନ : କଟକ ?

ରାଜୁ : ହଁ, ସେଇଠି ମୋର ବହୁତ ଅସୁବିଧା ହେଉଛି । ତୋ ପରି ଜଣେ ମୋ ପାଖରେ ନ ରହିଲେ... କଣ ଯିବୁନି ?

ସପନ : ହେଲେ, ବଡ଼ବାବୁ...

ରାଜୁ : ତୁ ବାବାଙ୍କ କଥା ଚିନ୍ତା କରନା । ସେ ବ୍ୟବସ୍ଥା ମୁଁ କରିଦେଇ ଯିବି । ଏତେ ଚାକର, ଚାକରାଣୀ ଥାଉ ଥାଉ ସେ କ'ଣ ଚଳି ପାରିବେନି ?

(ବାହାରେ କିଶୋରର ପାଟି ଶୁଣାଗଲା)

କିଶୋର : (ବାହାରୁ) ରାଜୁ, ଘରେ ଅଛୁକିରେ ?

ସପନ : ମୁଁ ଆସୁଛି ବାବୁ, ହେଲେ ମୋ କଥା ଯେମିତି ମନେଥାଏ । (ଚାଲିଗଲା)

କିଶୋର : (ପଶିଆସି) ଆରେ, ଏତେ ଦିନ ହେଲା ଆସିଲୁଣି, ଅଥଚ... ।

ରାଜୁ : Sorry କିଶୋର, ମୁଁ ଟିକିଏ ବ୍ୟସ୍ତ ଥିଲି ।

କିଶୋର : କିରେ, ତୋର ଏମିତି କି କାମ ଯେ... । ଆଚ୍ଛା ନଦୀକୂଳ ପଟେ ବୁଲି ଯାଉଥିବୁତ ?

ରାଜୁ : ମୁଁ ତ ତତେ ସେଇଠି ଦେଖିନି ।

କିଶୋର : ନାଁ, ମୁଁ ଏମିତି ବେଳେ ବେଳେ ଯାଏ ।

ରାଜୁ : ଆଚ୍ଛା ଶୁଣ୍, ପଢ଼ାପଢ଼ି କେମିତି କରୁଛୁ ?

କିଶୋର : ହଁ, ଭାବୁଛି ଲ (Law) ଟା ପାସ କରିଗଲେ ଓକିଲାତି କରିବି !

ରାଜୁ : ମନ୍ଦ କ'ଣ ।

କିଶୋର : ମନ୍ଦ ନୁହେଁ ଯେ ଭାଇ, ଆଜିକାଲି ଓକିଲଙ୍କ ସଂଖ୍ୟା ଯେମିତି ବଢ଼ି ଚାଲିଛି, କୋର୍ଟ ପାଖ ବରଗଛ ମୂଳେ ମଧ୍ୟ ଝୁଡ଼୍ ଶସ୍ତାରେ ଓକିଲ ମିଳୁଛନ୍ତି ।

ରାଜୁ : କିନ୍ତୁ ତା' ସାଙ୍ଗକୁ ମକଦ୍ଦମାର ସଂଖ୍ୟା ତ କମ୍ ବଢ଼ି ଚାଲିନି ।

କିଶୋର : କିନ୍ତୁ ଲାଭ କ'ଣ ? ଖାଲି କଳା କୋଟ ଟଣ୍ଡେ ଦେହରେ ଟାଙ୍ଗି ଦେଇ, 'କିଶୋରଚନ୍ଦ୍ର ଦାଶ, B. A., L L. B ବୋଲି Name plate ଟାଙ୍ଗି ଦେଲେତ ଚଳିବନି, ତା' ସାଙ୍ଗକୁ ପେଟକୁ ଦାନା ମଧ୍ୟ ମିଳିବା ଦରକାର । ଏଣିକି ଓକିଲଙ୍କ ଅବସ୍ଥା ଯାହା ହେଲାଣିଜି, ଛାଡ଼... ତୋ କଥା କ'ଣ କହିଲୁ ?

ରାଜୁ : ହଁ ପ୍ରାୟ ଭଲ । ଭାବୁଛି ଏମ୍. ଏସ୍‌ସିଟା ପାଶ୍ କରିଗଲେ ଅନ୍ତତଃ ଲେକ୍‌ଚରସିପ୍‌ଟିଏ କରି ଜୀବନ ନୌକାଟିକୁ ଶାନ୍ତିରେ ବାହି ନେବି ।

କିଶୋର : ହଁ, ଖୁବ୍ ଭଲ ଭାଇ, ଖୁବ୍ ଭଲ । ଅଧ୍ୟାପକ ହେବା ଯେମିତି ଏକ ଭଗବାନଙ୍କର ଆଶୀର୍ବାଦ । ତେବେ—

ରାଜୁ : ତେବେ ପୁଣି କ'ଣ ?

କିଶୋର : ନାଇଁଯେ, କଲେଜ କ୍ଲାସରୁମ୍‌ରେ ରାଜକିଶୋର ବାବୁ ଯେତେବେଳେ ପାଠ ପଢ଼ାଉଥିବେ, ସେତେବେଳେ କେତେ କଲେଜ ଝିଅଙ୍କ...

ରାଜୁ : ଛି, କିଶୋର, ପୁଣି ସେଇ ପିଲାକିଆ ଢଙ୍ଗ ବାହାର କଲୁ ।

(ପ୍ରବେଶ କଲେ ଗୀତା)

ଗୀତା : ଗୁଡ୍ ମର୍ଣ୍ଣି ରାଜୁବାବୁ !

କିଶୋର : ଆରେ ଗୀତା ଦେବୀ ଯେ, ସୁପ୍ରଭାତ ।

ଗୀତା : ନମସ୍କାର... ।

ରାଜୁ : କୁଆଡେ ବୁଲି ଆସିଲ ଗୀତା ?

ଗୀତା : ନାଇଁ, ଏଇ ବଜାରରୁ ଫେରୁଥିଲି । ଭାବିଲି ଆପଣଙ୍କ ସହିତ ଏମିତି ଦେଖାକରି ଯିବି ।

କିଶୋର : ଭୁଲଟାଏ ବା କ'ଣ ହୋଇଗଲା । ତୁମେ ଯେତେବେଳେ କଟକରେ ରହୁଛ... ।

ଗୀତା : ଭାଇନା, (ରାଜୁ ପ୍ରତି) ଆପଣ କେବେ କଟକ ଯାଉଛନ୍ତି ?

ରାଜୁ : ଭାବୁଛି ଏଥର ୩୦ ତାରିଖରେ ଚାଲିଯିବି । ପଢ଼ାପଢ଼ି କିଛି ହୋଇପାରୁନି । ପରୀକ୍ଷା ନିକଟେଇ ଆସିଲାଣି । ଆଉ ତୁମେ ?

ଗୀତା : ମୁଁ ମଧ୍ୟ ଶୀଘ୍ର ଚାଲିଯିବାପାଇଁ ଚେଷ୍ଟା କରୁଛି ।

କିଶୋର : କାହିଁକି, ତୁମେ ଦିହେଁ ସେଇ ଦିନ ଚାଲିଯାଉନା । ଖୁସିଗପ କରି ଟ୍ରେନ୍‌ରେ ସମସ୍ତ କଟିଯିବ ।

ରାଜୁ : ବସ ଗୀତା ! ଠିଆ ହେଲ କାହିଁକି । ସପନ୍ଦ, ସପ— **Excuse me, cold or hot ?**

ଗୀତା : **No thanks** । ଆଉ ରାଜୁବାବୁ । ମୁଁ ଯାଉଛି ପୁଣି ଆସିବ ।
(ଚାଲିଗଲେ)

କିଶୋର : (ଗୀତାଙ୍କ ଯିବା ବାଟକୁ ଚାହିଁ) ମୁଁ ବି ଯାଉଛି । ଆଚ୍ଛା ରାଜୁ, ନଈକୂଳ କୁଞ୍ଜବନ ବିହାର ମଧ୍ୟରେ ଯଦି କେବେ ପାରୁ ଆମ ଘର ପଟେ ବୁଲି ଆସିବୁ ।

ରାଜୁ : ମାନେ... ?

କିଶୋର : ଏତେ ଦିନ ହେଲା ଗାଁକୁ ଆସି ମୋ କଥା ଭୁଲି ଯାଇଛୁ— ମାନେ, ସେଇ ନଈ କୂଳର କୁଞ୍ଜ ବନରେ ରାଧା ଭୂମିକାରେ ମାୟା ଆଉ ତ୍ରିଭଙ୍ଗୀ ଠାଣିରେ ବଂଶୀ ବାଦନ କରି ରାଜୁ ନୃତ୍ୟ କରୁକରୁ ଆମ ସମସ୍ତଙ୍କୁ ଭୁଲି ଯାଇଛନ୍ତି ।

ରାଜୁ : ଏ ସବୁ ତୁ କ'ଣ କହୁଛୁ କିଶୋର !

କିଶୋର : ବନ୍ଧୁ ହିସାବରେ ମୁଁ କିଛି ମିଛ କହୁନି ରାଜୁ । ହେଲେ ବେଲାଭୂମି ଉପରେ ତୁମେ ଯେଉଁ କଳ୍ପନା କରି ଚାଲିଛ ସେଇ କଳ୍ପନା କଳ୍ପନାରେ ହିଁ ରହିଯିବ ।

ରାଜୁ : ବନ୍ଦକର କିଶୋର । ବନ୍ଦକର । ବନ୍ଧୁ ଭାବରେ ସାମାନ୍ୟ ସଂଯତ ହୋଇ କଥାହେବା ମଧ୍ୟ ଭୁଲିଯାଉଛୁ ?

କିଶୋର : ମାୟା ଯେ କେବଳ ମାୟାଜାଲ ଭିତରେ ଆବଦ୍ଧ ରହି ମୁକ୍ତ ପାଇ ପାରିବେ ନାହିଁ । ଆଉ ରାଜୁ, କଳ୍ପନାର କଳା ପରଦା ମଧ୍ୟରେ ଆଲୋକ ଖୋଜି ଖୋଜି ଶେଷରେ ପାଗଳ ହୋଇଯିବେ । (ହସିଲେ)

ରାଜୁ : ବନ୍ଧୁତ୍ୱର ଗୋଟାଏ ସୀମାଅଛି । ତୁ ଯା' କିଶୋର, **I say please getout,** ଯାଅନି, ଯାଅନି ... ।

କିଶୋର : (ଖୁବ୍ ଜୋରରେ ହସି ଉଠିଲେ) ଆଉ, ବସନ୍ତ ନବରରେ ଧନେ ଝଟକ ସୈରନ୍ଧ୍ରୀଙ୍କୁ ପାଇବା ଆଶାକରି ପ୍ରାଣ ହରାଇ ଥିଲ ବନ୍ଧୁ ।
(ଚାଲିଗଲେ)
ରାଜୁ : ସପନ, ସପନ,... । (ବିଚଳିତ ହେଉଥିଲେ)

## ଅଂଧାର

### ଷଷ୍ଠ ଦୃଶ୍ୟ

[ପଞ୍ଚାୟିପଥ — ମକୁନ୍ଦ ଯୋଗୀର କାନ ଧରି ଟାଣି ଆଣୁଥାଏ । ଯୋଗୀ ରଡ଼ି ଛାଡ଼ୁଥାଏ । ]

ଯୋଗୀ : କାନଟା ଛିଣ୍ଡି ଯିବ ମକୁନ୍ଦାଇ, ଛାଡ଼ିଦେ ।
ମକୁନ୍ଦ : ଏମିତ ବୋକାଙ୍କ କାନ ଛିଣ୍ଡି ଯିବା ଦରକାର ।
ଯୋଗୀ : ଅରେ, ମୁଁ କ...ଣ କଲି କହୁନୁ ?
ମକୁନ୍ଦ : ନାଇଁ, ତୁ କ'ଣ କଲୁ, ତୁ'ତ ଗୋଟାପଣେ ତୁଳସୀ ।
ଯୋଗୀ : କ'ଣ କଲି କହୁନୁ, ମିଛଟାରେ... ।
ମକୁନ୍ଦ : ମିଛଟାରେ ନାଇଁ, ତୁ ଯେ ବାଟଟାରେ ଠିଆ ହୋଇ କ'ଣ କରୁଥିଲୁ ? ପର ଝିଅ ବୋହୂଙ୍କ ନାମରେ, ତୋ ଜିଭ ଛିଣ୍ଡି ପଡ଼ିବନି ।
ଯୋଗୀ : କାନଟାକୁ ତୁ ଯେଉଁ ଅବସ୍ଥା କଲୁଣି ସେତ ଆପେ ଆପେ ଛିଣ୍ଡି ପଡ଼ିବ । ପୁଣି କହୁଛୁ କଥା କହିଲେ ଜିଭ ଛିଣ୍ଡି ପଡ଼ିବ । ଚାଲିଲେ ଏଥର କହିବୁ, "ଗୋଡ଼ ଦୁଇଟାକୁ ବାଡେଇ ଦେବି" । ଅଚ୍ଛା ତୁ କହିଲୁ ମକୁନ୍ଦାଇ ମୁଁ ଆଉ କ'ଣ କରିବି ।
ମକୁନ୍ଦ : ବୁଝିଲୁ ଯୋଗୀ, ଗୋଡ ଦୁଇଟାକୁ ଠେଙ୍ଗେଇ ଦେବିଯେ, ଘର କୋଣେ ବସି ହରିନାମ ଜପିବୁ ।

ଯୋଗୀ : ଖାଲି ହରିନାମ କଲେ କ'ଣ ହେବ । ତୁ'ତ ଏବେ ଥିଏଟରରେ ପାର୍ଟ କରୁଛୁନେ, ମତେ ପାର୍ଟଟିଏ ମାଗିଲେ ଦେଉନୁ । କାହା କଥାବାର୍ତ୍ତା ନକର କ'ଣ ମୁଁ ତାକୁ ମୁଖସ୍ତ କରନ୍ତି ନାହିଁ ।

ମକୁନ୍ଦ : ଠିକ୍ କହୁଛୁ, ମୋର ମଧ୍ୟ ମନେ ପଡ଼ିଗଲା । ମତେ ଆଜି ପାର୍ଟ ମୁଖସ୍ତ କରି ରିହାର୍ସଲକୁ ଯିବାକୁ ପଡ଼ିବ ।

ଯୋଗୀ : ତୁ' କି ପାର୍ଟ କରୁଛୁକି ?

ମକୁନ୍ଦ : ଧୋଉଡେରି, ରୁ ଦୁଇ ମିନଣ୍ଟ ଚୁପ୍ ରହିଯା । (ମନେ ପକାଇ) ମନେତ ପଡ଼ୁନି ।

"ପ୍ରୀୟତମା ଶଣ, ସଜାଇଣ ଦିଅ ମୋତେ ବୀର ବେଶେ ଆଜି, ଧରି ଧନୁଶର, କରି ଶ୍ରରଖାର, ଗୋଟି ଗୋଟି କରି ମୃଗ ଲେଟାଇ ମହିରେ, ଫେରିବି ମୁଁ ରମ୍ୟରତ୍ନ ସିଂହାସନେ । ତା' ପରେ..."

ଯୋଗୀ : ତା ପରେ, ମ...ମ...କୁନ୍ଦାଇ (ଥରୁଥିଲା)

ମକୁନ୍ଦ : ଆବେ, ଯିବୁନା ଏଇ ଆରଂଭ ହେବ ।

ଯୋଗୀ : କ'ଣ ?

ମକୁନ୍ଦ : ଆରଂଭ ହେଲା ଯୁଦ୍ଧ,—
ଆଣିଦିଅ ସଖା ମୋର କୋଦଣ୍ଡ କି କାଣ୍ଡ,
ଖଂଡ଼, ଖଂଡ କରି ମୁହିଁ ଯୋଗୀଆର ମୁଂଡ଼,
କଂଉ ସଖା !
କାହାକୁ ମାରିବି...?
ଭାଇ, ବଂଧୁ...
ନା, ନା, ଯୁଦ୍ଧେ ମୋର ନାହିଁ ପ୍ରୟୋଜନ ।

ଯୋଗୀ : ଥାଉ ମୁଁ ଗଲି । କୋଦଣ୍ଡ ଆଣିବା ଦରକାର ନାହିଁ । ବଂଚିଥିଲେ ମୁଁ ଏମିତ କେତେ ପାର୍ଟ କରିବ ।

[ମକୁନ୍ଦର ଶର ମାରିବା ଅଭିନୟ ଦେଖି ଯୋଗୀ ଦୌଡ଼ି ପଳାଇଲା । ]

ମକୁନ୍ଦ : ଚାଲିଗଲୁ । ଚଢ଼ ଯଦି ଆସନ୍ତା ମୋ ହସ୍ତେ, ପେଶିଥାନ୍ତି ଏହିକ୍ଷଣି
କାଟିବାକୁ ଯୋଗୀଆର ମୁଣ୍ଡ ।

ରଜନୁ : (ପ୍ରବେଶ କରି) ବାଃରେ ପୁଣି କାହାର ଥିଏଟର ଆରମ୍ଭ ହୋଇ-
ଗଲା । ମୁଁ ଜାଣେ ପରା... ।

ମକୁନ୍ଦ : (ନ ଦେଖି) କିଏ ? କିଏ ତୁମେ ? ଚାଲିଆସ ସମ୍ମୁଖକୁ ମୋର,
ଅଛିଯଦି ଦେହେ ତବ ବୀରରକ୍ତ ।
ସମ୍ମୁଖ ସମରେ ଏବେ ହୁଅରେ ପ୍ରସ୍ତୁତ ।
(କହୁକହୁ ରଜନୁକୁ ଦେଖି ଲଜରେ ମୁହଁ ଲୁଚାଇଲା)

ରଜନୁ : ଆରେ ଲଜ କାହିଁକି ?

ମକୁନ୍ଦ : ନାହିଁମ, ଏଇ ପାର୍ଟଟା ଭୁଲିଯାଇଥିଲିଯେ, ସମସ୍ତ ପାଇ ଟିକିଏ
ଗଡ଼େଇ ନେଉଥିଲି ।

ରଜନୁ : ଭଲ, ଭଲ । ହେଲେ ମକୁ ତତେ ସବୁ ଲାଗିଲା ।

ମକୁନ୍ଦ : (ନିଜର ଚତୁର୍ଦ୍ଦିଗ ନିରୀକ୍ଷଣ କରି) କାହିଁ ଲାଗିନାହିଁତ ?

ରଜନୁ : ଆରେ ଲାଗିବ କ'ଣ ? ମୁଁ ପରା ଆଉ ଦୁଇଦିନ ପରେ ଚାଲି ଯାଉଛି ।

ମକୁନ୍ଦ : ତୁମେ ଚାଲିଯିବ ? ମାଷ୍ଟ୍ରା ଆଉ ମୁଁ...

ରଜନୁ : ମାଷ୍ଟ୍ରା ଯେପରି ସାହସ ନ ହରାଏ । ସ୍ତ୍ରୀ ଲୋକ ସେ । ଟିକିଏ କଥାରେ
ଭାଙ୍ଗି ପଡ଼ିବ ।

ମକୁନ୍ଦ : ମାଷ୍ଟ୍ରା ଏ କଥା ଶୁଣିଲାଣି ନା ?

ରଜନୁ : ମୁଁ ଯିବା ପୂର୍ବରୁ ସବୁ କହିବି ।

ମକୁନ୍ଦ : କହିଦ, ସେ ଯେପରି ମୋ କଥାରୁ ବାହାରି ନ ଯାଏ ।

ରଜନୁ : ତୁ କ'ଣ ଭାବୁଛୁ, ମାଷ୍ଟ୍ରା ତୋ କଥାରୁ ବାହାରି ଯିବ । କାଉଁରିଆ
କାଠି ଭଳି ଭାଙ୍ଗିଯିବ ପଛେ ସେ ନଇଁବନି ।

ମକୁନ୍ଦ : ନାହିଁ ଯେ, କିଶୋର ବାବୁଟା ଯେଉଁ ରାସ୍ତା ଧରିଲାଣି, କୁମ୍ଭୀର ନେଇ
କୋଉଦିନ ମଝି ନଈରେ କରିବ ।

ରଜନୁ : ତୁ ସେଥିପାଇଁ ଚିନ୍ତା କରନା ମକୁ । ନିଜେ ଯଦି ଆମେ ଭଲଥିବା
ତା' ହେଲେ କିଏ ଆମର କ'ଣ କରିବ । ରାବଣରେ ଶତ ପ୍ରଲୋଭନରେ
ସୀତା ତ ଆଉ ଭୁଲିଯାଇ ନଥିଲେ ।

ମକୁନ୍ଦ : ମୁଁ ସେକଥା କହୁନି ଯେ ରାଜୁବାବୁ, ହେଲେ ଜନ ଅପବାଦରେ ରାମଚଂନ୍ଦ୍ର ତ ପୁଣି ସୀତାଙ୍କୁ ବନବାସକୁ ପଠାଇଥିଲେ । ହେଉ, ମୁଁ ଯଦି ସେ କିଶୋର ବାବୁଙ୍କୁ ମୋ ରାବଣ ପାର୍ଟଟା ଥରେ ଦେଖେଇ ନ ଦେଇଛି ମୋ ନାଁ ମକୁନ୍ଦ ନୁହେ । କ'ରେ ପାର୍ଟ କଲି ବେଳେତ କେତେ ମାଙ୍କଡ଼ଙ୍କ ମୁଂଣ୍ଡ ଏଇ ହାତରେ ମୋଡ଼ି ଦେଇଛି ।

ରାଜୁ : ଏତେ ବାଟ ଆଗେଇ ଯିବନି ମକୁ । କଥାରେ ପରା ଅଛି— "ଧୀର ପାଣି ପଥର କାଟେ" ।

ମକୁନ୍ଦ : ହେଉ ହେଲା । ତୁମେ ଯାଅ, ହେଲେ ତୁମେ ପ୍ରତି ସପ୍ତାହରେ ମାସ୍ତ୍ରା ପାଖକୁ ଚଠି ଗଂଡ଼େ ଗଂଡ଼େ ଦେଉଥିବ । କାଳେ ସେ ସାହସ ହରେଇ ବସିବ ।

ରାଜୁ : ତୁ ସେ ବିଷୟ ଚଂତା କରନି ମକୁ, ଆଚ୍ଛା ମୁଁ ଆସୁଛି । (ଯାଉ ଯାଉ ଫେରି) ରବିବାର ସଂଧ୍ୟା ପାଂଚଟା ବେଳେ କଲେଜ କ୍ଲବରେ ଦେଖା ହେବ, ଆସିବୁ । (ଚାଲିଗଲେ)

ମକୁନ୍ଦ : ଏତେ ଥିଏଟର ରେ ପାର୍ଟ ନେଇ କେତେ କାମ କରି ପାରିଲି । ଏଇ କାମଟାକୁ କ'ଣ ପାରିବନି ?

(ଅଂତରାଳରୁ କିଶୋରର ପାଟି ଶୁଣାଗଲା)

କିଶୋର : ନିଷ୍ଚୟ ପାରିବ ତୁମେ । (ଯୋଗୀ ମନେ କରି ପଶିଆସୁଥିଲେ । ହଠାତ୍ ମକୁନ୍ଦକୁ ଦେଖି) ଆରେ ତୁମେ... ।

ମକୁନ୍ଦ : (ଅଝାଳିଆ ସ୍ୱରରେ) ଆଜ୍ଞା ହଁ ମୁଁ । ଯାହାକୁ ତୁମେ ପିଲାଦିନୁ ଥିଏଟରରେ ଦୂତ ପାର୍ଟ ଠାରୁ ଆରଂଭ କରି ରାବଣ ପାର୍ଟ ପର୍ଯ୍ୟନ୍ତ ଦେଖି ଆସିଛ ।

କିଶୋର : ଓଃ, Sorry । ଆଚ୍ଛା, ଯୋଗୀକୁ ତୁମେ ଏଇବାଟେ ଦେଇ ଯିବାର ଦେଖିଲ ?

ମକୁନ୍ଦ : ନା, ହେଲେ ବାବୁ, ଯାହାକୁ ତୁମେ କାମଧେନୁ ମନେ କରି ସର ଖାଇବାକୁ ବସିଛ, ପାରିବନି । ବରଂ ଗୀତା ଦେବୀଙ୍କ ପାଖରେ ତୁମର ସେ ଫୁଲଶରଟା ପ୍ରୟୋଗ କର ।

କଶୋର : ସ୍ୱିଣ୍ଡେଲ୍—

ମକୁନ୍ଦ : କ'ଣ କହିଲ ବାବୁ, ସ୍ୱିଣ୍ଡେଲ୍ । ମାନେ... ?

କିଶୋର : ଅଭଦ୍ର ।

ମକୁନ୍ଦ : ଠିକ୍ କହୁଛ ବାବୁ, ମୁଁ ଅଭଦ୍ର ନ ହୋଇଥିଲେ, ଯାତ୍ରାଦଳରେ ଦ୍ରୌପଦୀ ବସ୍ତ୍ରହରଣଟା ହୋଇପାରି ନ ଥାନ୍ତା ।

କିଶୋର : ଗାଉଁଲି କେଉଁଠିକାର । କାହାକୁ ତୁମେ କ'ଣ କହି ଯାଉଛ । Do you think that I am Raju, No, Mr. Makundi, I am Kishore· Nonsense...

(ଚାଲିଗଲେ)

ମକୁନ୍ଦ : ମଣିଷ ଇଂରାଜୀ ନ ପଢ଼ି ଖୁବ୍ ଭୁଲକଲି । ଗାଳି କି ପ୍ରଶଂସା କାହିଁ କିଛିତ ବୁଝି ହେଲନି । (ମନେପକାଇ) ମନେ ପଡ଼ିଲା । ସେ ଦିନ ସ୍କୁଲ୍ ବାଟଦେଇ ଗଲାବେଳେ ମାଷ୍ଟ୍ରେ ପିଲାମାନଙ୍କୁ କହୁଥିଲେ —ମ୍ୟାନ ମାନେ ମନୁଷ୍ୟ, ଆଇ ମାନେ...ମୁଁ । ନୋ, ମାନେ ନାହିଁ । ତେବେ ବାବୁ କ'ଣ କହିଲେଟି, ମନେ ତ ପଡୁନି । (ମନେପକାଇ) "ଆଇ ନଟ୍ ମେନ୍" । ମାନେ ସେ ମନୁଷ୍ୟ ନୁହନ୍ତି, ହୁଁ ଆମେ ମଣିଷ ହେଲେ ହେଲି । କାହା କଥାରୁ ଆମକୁ କଣ ମିଳିବ...,

(କହି କହି ଚାଲିଗଲା)

—ଅଂଧାର—

## ସପ୍ତମ ଦୃଶ୍ୟ

[ଉଦ୍ୟାନ—ଦୀନବନ୍ଧୁ ମହାନ୍ତିଙ୍କ ଗୃହ ସଲଗ୍ନ ଉଦ୍ୟାନ । ମହାନ୍ତି ଏଣେ ତେଣେ ପଦଚାରଣ କରୁଥିଲେ]

ସପନ : (ପ୍ରବେଶ) ବାବୁ, ବଦନେଇ ତେହେରା ଆପଣଙ୍କ ସହିତ ଦେଖା କରିବ ବୋଲି ବାଣ୍ଡ ଓଳରେ ଅପେକ୍ଷା କରିଛି ।

ଦୀନବନ୍ଧୁ : ତାକୁ ଏଇଠିକି ପଠେଇ ଦେ । ହଁ, ଗୁଜୁ ଫେରିଲାଣି ତ ? ନଖାଇ ନପିଇ କେଉଁଠା ଦିନ ହେଲା ଗାଁକୁ ଯାଇଛି ଯେ ବୁଲୁ ଲାଗିଛି ।

ସପନ : ନା' ବାବୁ ଏ ଯାଏଁ ଫେରିନାହାନ୍ତି ।

(ସପନ ଚାଲିଯିବା ପରେ ପରେ ବଦନେଇ ପ୍ରବେଶ କରିଛନ୍ତି ।)

ବଦନେଇ : ଓଳଗି ଆଜ୍ଞା ।

ଦୀନବନ୍ଧୁ : କ'ଣ ବଦନେଇ କୁଆଡେ ବୁଲି ଆସିଲୁ ।

ବଦନେଇ : କଥା କ'ଣକି ଆଜ୍ଞା, ପିଲାଟିକୁ ଏବର୍ଷ ଉଠେଇ ଦେବ ବୋଲି ଭାବୁଛି ଯେ...

ଦୀନବନ୍ଧୁ : ଆରେ, ପାଖ ଆଖ ଗାଁରେ କେଉଁଠି ଦେଖି ଉଠେଇ ଦେଉନୁ । ଆଉ ଭାବୁଛୁ ଗୋଟାଏ କ'ଣ ? ଝିଅ ପିଅ ଆଉ କେତେ ଦିନ ସାଇତ ରଖିବୁ ।

ବଦନେଇ : ସେଇଥି ପାଇଁତ ଫେରେ ଯୋଗାଡ଼ ଯନ୍ତ୍ର କରିବାକୁ ହେବ ଅଜ୍ଞା ।

ଦୀନବନ୍ଧୁ : ଅଭିଆଡ଼ି ଝିଅଟାକୁ କେତିଦିନ ଘରେ ରଖିଲେ, ବାରକଥା ଅପେ । କେଉଁଠି ହେଲେ ବନ୍ଧାଛନ୍ଦା ଦେଇ ପଇସା ପତ୍ର ଯୋଗାଡ଼ କର ।

ବଦନେଇ : କଣ ବା ଅଛି ଯେ କଂ ବନ୍ଧାରଖି ଦେବ ବାବୁ । ସପତ ବୋଇଲେତ ଘର ଡିଅ ଖଣ୍ଡିକ ଯାହା ପଡ଼ିଛି । ସେଇଟି ଏବର୍ଷ ସଇପା ଅନ୍ଧବନ୍ଧୁ

ଛପର କଟି ପାଶନ ମେ, ଭିତରେ ଚନ୍ଦ୍ର ସୂର୍ଯ୍ୟ ଦେଖୁଛନ୍ତି । ବର୍ଷା ହେଲେ ପାଣି ବାହାରେ ନ ପଡ଼ୁଣୁ ଘରେ ପଡ଼ୁଛି ।

ଦୀନବନ୍ଧୁ : ତା' ହେଲେ ଗୋଟାଏ କାମକର । ଘର ଖର୍ଚ୍ଚ କ ମୋ ନାଁରେ କରିଦେ । ମୋରତ ଆଉ କଏ ନାହିଁ ଯେ, ଯାଇ କେଉଁଠି ସାହିରେ ରହିବ । ଟଙ୍କା ପଇସା ଯାହା ଦରକାର ନେ । ସୁବିଧା ପାଇଲେ ଫେରେଇ ଦେବୁ ।

ଦନେଇ : ହେଇଥିବା ହେଉ ବାବୁ । ଆପଣ ଦୟାକଲେ ସବୁ କିଛି ହେବ । ମୁଁ ତା' ହେଲେ ଯାଉଛି ବାବୁ । ସବୁ ଯୋଗାଡ଼ କରି ବଖତ ବେଳେ ଆସି ମିଶିବି । (ଦନେଇ ନମସ୍କାର କରି ଚାଲିଯିବା ପରେ ପ୍ରବେଶ କରିଛନ୍ତି କିଶୋର ଆଉ ଯୋଗୀ)

କିଶୋର : ନମସ୍କାର ଆଜ୍ଞା ।

ଯୋଗୀ : ଓଳଗି ଆଜ୍ଞା ।

ଦୀନବନ୍ଧୁ : ନମସ୍କାର, କୁଆଡେ ଚାଲି ଆସିଲୁ କିଶୋର । ପଢ଼ାପଢ଼ି କେମିତି କରୁଛୁ ।

କିଶୋର : ନାହିଁ ଆଜ୍ଞା । ଏଇ ସାନୁ ବାବୁଙ୍କ ପାଖକୁ ଆସି ଥିଲି ଯେ, ସେତ ସବୁ ବେଳେ ନଈକୂଳ ଭ୍ରମଣରେ ମାତିଛନ୍ତି । ମୁଁ ଆଉ ଦେଖା ପାଉଛି କେତେବେଳେ ।

ଦୀନବନ୍ଧୁ ; ନଈକୂଳ ଭ୍ରମଣ .. ?

ଯୋଗୀ : ଏଇ...

କିଶୋର : କିରେ କହୁନୁ ।

ଯୋଗୀ : ଏଇ ଦନେଇ ବେହେରାଙ୍କ ଝିଅ ମାୟା ସହିତ ।

କିଶୋର : ହେଉ ଆଜ୍ଞା ସେଥିରେ କ'ଣ ଅଛି । ଫୁଲ ଥିଲେ ଏମିତି କେତେ ଭ୍ରମରତ ଆସନ୍ତି । ଖାଲି ଆପଣ ବୋହୂକରି ଘରକୁ ଆଣିପାରିଲେ ହେଲା ।

ଦୀନବନ୍ଧୁ : ତୁ ଏ ସବୁ କ'ଣ କହୁଛୁ କିଶୋର ?

କିଶୋର : ଭୁଲ କହୁନି ଆଜ୍ଞା । ପଚାରନ୍ତୁ ଏଇ ଯୋଗୀଆକୁ, ସେ ନିଜ ଆଖିରେ ଦେଖି ଆସିଛି ।

ଦୀନବନ୍ଧୁ : ଏ କଥା କ'ଣ ସତ୍ ଯୋଗୀ ।

ଯୋଗୀ : ମୁଁ ସବୁ ନିଜ ଆଖିରେ ଦେଖି ଆସିଛି ଆଜ୍ଞା । ନେଇ ହସ, ଝୁଣ୍ଟି, ନାଚ । ରାଜୁବାବୁ ସବୁ ସେଇ ଗଛ ଉହାଡ଼ରେ...ଆହା ହା... ।

ଦୀନବନ୍ଧୁ : ଚୁପ୍ କର ତୁମେମାନେ, ଜାଣ ସେ କାହା ପୁଅ !

କିଶୋର : ସେଇଥି ପାଇଁ ତ ଗାଁର କାହାରିକୁ ଖାତିର ନାହିଁ ।

ଦୀନବନ୍ଧୁ : ସବୁ ମିଛ । ଏ ସବୁ ତୁମର ମନ ଗଢ଼ା କଥା । ମୋ ପୁଅକୁ ମୁଁ ବେଶ୍ ଚିହ୍ନେ ।

କିଶୋର : ବୁଡ଼ି ବୁଡ଼ି ପାଣି ପିଇଲେ କେହି ଜାଣନ୍ତିନି ଆଜ୍ଞା । ଆପଣ ଖାଲି ବାପା ହିସାବରେ ରାଜୁର ବାହାର ରୂପଟା ଦେଖି ପାରିଛନ୍ତି । ହେଲେ ଅସଲ ରୂପଟା ..

ଦୀନବନ୍ଧୁ : ଆଉ ତୁମେ ?

କିଶୋର : ମୁଁ ରାଜୁର ବନ୍ଧୁ । ପିଲଟି ଦିନୁ ତା' ସହିତ ମିଳାମିଶି ପାଠ ପଢ଼ି ଆସିଛୁ । ଆପଣଙ୍କ ଅପେକ୍ଷା ମୁଁ ରାଜୁକୁ ଭଲରୂପେ ଚିହ୍ନେ ।

ଦୀନବନ୍ଧୁ : ରାଜୁକୁ ମୁଁ ବେଶ୍ ଚିହ୍ନେ, ସେ ମୋ ପୁଅ ।

କିଶୋର : ଆପଣଙ୍କ ପୁଅ ବୋଲି ତ ଆଜି ବାଟ, ଘାଟରେ ପର ସ୍ତ୍ରୀଅ ବୋହୂଙ୍କ ସାଙ୍ଗରେ ଯାହା ନାହିଁ ତାହା କରି ଯାଉ ଅଛନ୍ତି । କିନ୍ତୁ ଆଜ୍ଞା ଫଳାଫଳ କିଛି ଭଲ ହେବନି ।

ଯୋଗୀ : ନାହିଁ ଆଉ କ'ଣ । ଆମେ ଗ୍ରେଟ ଲୋକ ବୋଲି ଆମର କଣ ମହତ ନାହିଁ । ଆହା,ହା ସେ ନେଇ ହସ ଝୁଣ୍ଟିରେ... ।

ଦୀନବନ୍ଧୁ : ତୁମେମାନେ ଏଠୁ ଚାଲିଯାଅ । (ରାଗି) ସପନ, ସପନ, ଏମାନଙ୍କୁ ଏଠୁ ଧକ୍କା ଦେଇ ବାହାର କରିଦେ ତ । ମୋର ଘରେ ଗୋଡ଼ ଦେଇ ଫେରେ ମୋ ପୁଅ ନାମରେ ବଦ୍‌ନାମ କରି ଚାଲିଛନ୍ତି ।

କିଶୋର : ଥାଉ ଆଜ୍ଞା, ଚାକର ଡ଼ାକିବା ଆଦୌ ଦରକାର ନାହିଁ । ଆମେ ଆପେ ଆପେ ଚାଲି ଯାଉଛୁ । ହେଲେ ନଈ କୂଳରେ ଘର କରିଥିଲେ ବନ୍ୟାର ଡାଉ ଦିନେ ନା'ଦିନେ ଭୋଗ କରିବାକୁ ହୁଏ ।

ଦୀନବନ୍ଧୁ : ଚାଲିଯାଅ କହୁଛି ।
ଯୋଗୀ : ବୋଉଲେ... ।

(କିଶୋର ଓ ଯୋଗୀ ଚାଲିଗଲେ । ଦୀନବନ୍ଧୁ ଆଘାତ ବାଧା ପାଇ କିଶୋରର ଯିବା ବାଟକୁ ଅନାଇ ରହିଥିଲେ । ବିପରୀତ ଦିଗରୁ ପ୍ରବେଶ କଲା ରାଜୁ । ଚାଲି ଯାଉଥିବା ବେଳେ ପଛରୁ ଡାକିଲେ)

ଦୀନବନ୍ଧୁ : ରାଜୁ !
ରାଜୁ : କ'ଣ ବାବା !
ଦୀନବନ୍ଧୁ : ମୁଁ ଯାହାସବୁ ଶୁଣିଲି, ସେ କଥା କ'ଣ ସତ ?
ରାଜୁ : କେଉଁ କଥା ବାବା !
ଦୀନବନ୍ଧୁ : ମାମୁଁକୁ ବର୍ତ୍ତମାନ କେଉଁଠି ଛାଡ଼ି ଦେଇ ଆସିଲୁ ?
ରାଜୁ : ବାବା !!!
ଦୀନବନ୍ଧୁ : ମୋତେ କ'ଣ ନାହିଁ କ'ଣ କହିଗଲା ସେ ଲୋକଟା ।
ରାଜୁ : ବାବା !!!
ଦୀନବନ୍ଧୁ : ଠିକ୍ ଅଛି । ମୁଁ ମଧ୍ୟ ଏ ଗାଁ ଲୋକଙ୍କର କେମିତି ପାଟି ବନ୍ଦ କରିବାକୁ ହୁଏ ବେଶ୍ ଜାଣେ । ବୁଝିଲୁ ରାଜୁ, ଏ ଗାଁ ଲୋକଙ୍କର ଖାଲି ପାଟି ଅଛି ପରନିନ୍ଦା ଗାଇବାକୁ ଆଉ କାନ ଅଛି ପରନିନ୍ଦା ଶୁଣିବାକୁ, ହେଲେ ଆଖି ନାହିଁ ପ୍ରକୃତ ଘଟଣା କ'ଣ ଦେଖିବାକୁ ।
ରାଜୁ : କଥା କ'ଣ ବାବା ?
ଦୀନବନ୍ଧୁ : ମୋ ମୁହଁ ଉପରେ କ'ଣ କହିଗଲା ସେ ଲୋକଟା । ତୁ କୁଆଡ଼େ ମାମୁଁ ସହିତ ନଈ କୂଳରେ ଖୁବ୍ ମିଳାମିଶା କରୁଛୁ ।
ରାଜୁ : ସେ ଲୋକଟା କିଏ ବାବା ?
ଦୀନବନ୍ଧୁ : ସେ ଯିଏ ହେଉନା କାହିଁକି ? ଜମିଦାରୀ ଚାଲିଗଲା ବୋଲି, ମୋ ପୁଅ ନାଁରେ...ସେ ପୁଣି ଗୋଟାଏ— । ନା'ନା ସେ ଚାଲି ଯାଇଛି, ଖୁବ୍ ଭଲ ହୋଇଛି ।

ରାଜୁ : ଷଡ କ'ଣ ବାବା । ଏ ଗାଁରେ ତ ପୁଣି ଏମିତ ଲୋକ ଅଛନ୍ତି ଯେ, ଯେଉଁମାନଙ୍କ ଉପରେ ଶ୍ରେଷ୍ଠ ଘରର ଚିହ୍ନ, ବୋହୂମାନେ ବାହାରକୁ ବାହାରି ପାରୁ ନାହାନ୍ତି । ତୁମର ଦସ୍ତାରେ ଆଜି ସେମାନେ ମଣିଷ ହୋଇ ଓଲଟି ତୁମକୁ ଚୋଟ ମାରୁଛନ୍ତି ।

ଦୀନବନ୍ଧୁ : ଠିକ୍ କହୁଛୁ ବାପ । ମୋ ଯୋଗୁଁ ସେମାନେ ବଡ଼ ବଡ଼ କଥା କହି ଶିଖିଛନ୍ତି । ଚୋଟ ମାରବା ଆଗରୁ ସାପକୁ କେମିତ ପେଡ଼ିରେ ରଖିବାକୁ ହୁଏ, ସେ କଥା ମୁଁ ବେଶ୍ ଜାଣେ ।

ରାଜୁ : ଚାଲ ବାବା, ତୁମେ ବିଶ୍ରାମ ନେବ ।

[ଆଗେ ଆଗେ ଦୀନବନ୍ଧୁ ଓ ପଛରେ ରାଜୁ ଚାଲି ଯାଉଥିଲା ବେଳେ — —

—ଅଂଧାର—

## ଅଷ୍ଟମ ଦୃଶ୍ୟ

[ନଈକୂଳ—ଯେଉଁଠି ବାଲିଘରର ଆଭାସ ମିଳିଥିଲା । ପରଦା ଉଠିଲା ବେଳକୁ ଦେଖାଗଲା ମକୁନ୍ଦ ଦୁଇଟି ଫୁଲମାଳ ଧରି ଖୁସିରେ ଗୀତ ଗାଇ ନାଚ ଚାଲିଛୁ ।]

ଅସରା ଅସରା ବରଷା ଆସିଲା
ମେଘକୁ ହେଲାଣି ଡ଼ର ।
ବର କନିଆଁକୁ ବେଗ ସଜ କର
କରି ଦେବା ବାହାଘର ।

(ଇତ୍ୟବସରରେ ପ୍ରବେଶ କରିଛନ୍ତି ରାଜୁ ଓ ମାୟା ହାତ ଧରାଧରି ହୋଇ । )

ମୁକୁନ୍ଦ : (ଦୁହିଁଙ୍କୁ ଦେଖି) ତୁମେ ସବୁ ଆସିଗଲ । ଖୁବ୍ ଭଲ ହୋଇଛି । ସେମିତି ହାତ ଧରାଧରି ହୋଇ ଦୁହେଁ ଠିଆ ହୁଅ ।

ରାଜୁ : (ମାୟାର ହାତ ଛାଡ଼ି) ମକୁ ..

ମୁକୁନ୍ଦ : ଆରେ ଠିଆ ହୁଅନ । ନ ହେଲେ କାନ ଧରି ଠିଆ କରେଇ ଦେବି । (ମାୟାର କାନଧରି) ମାୟା ! ଏଇଠି ଠିଆହୁଅ । ଆସ ରାଜୁବାବୁ ଏଇଠିକି ।

(ହାତରେ ଧରିଥିବା ଫୁଲ ମାଳ ଦୁଇଟି ଦୁହିଁଙ୍କ ଗଳାରେ ଲମ୍ବାଇ ଦେଲା । ହଠାତ୍ ଭବିଷ୍ୟତର କଳ୍ପନାରେ ଆଖି ଛଳ ଛଳ ହୋଇ ଆସିଲା । )

ମୁକୁନ୍ଦ : ବାବୁ...

ରାଜୁ : ଏ କ'ଣ ମକୁ ?

ମୁକୁନ୍ଦ : ନା' ବାବୁ, ସେ କିଛି ନୁହେ । କେଉଁ ପିଲା ଦିନର ସେଇ ବାଲି ଖେଳ ବେଳର ଦୁଇପଦ କଥା ଆଉ ଆଜିର ଏ ମିଳନ ମଧ୍ୟରେ ମୁଁ ସିନା କିଛି ପ୍ରଭେଦଟା ଖୋଜି ପାଉନି, ହେଲେ ରାଜୁବାବୁ, ଗରିବ କେଉଟ ଘରର ଅଲୋଡ଼ା ଅଖୋଜା ଫୁଲଟିକୁ ତୁମେ ଠିକ୍ ଏମିତି ତୋଳି ନେଇ ପାରିବତ ? ତା'କୁ ପାଦରେ ଦଳି ଦେବନିତ ବାବୁ ?

ରାଜୁ : ମକୁ... । ହୁଏତ ଏଇଥି ପାଇଁ କେତେ ବିପତ୍ତି ଆସିପାରେ । ହେଲେ ଏ ସମାଜରେ ପ୍ରତିଷ୍ଠିତ ଜାତି ପ୍ରଥାର ଏ ପ୍ରାଚୀରକୁ ଭାଙ୍ଗିବା । ମୁଁ ଆଜି ଶପଥ କରି କହୁଛି, ଜୀବନର ଶେଷ ରକ୍ତବିନ୍ଦୁ ଟିକକ ଥିବା ପର୍ଯ୍ୟନ୍ତ ମାୟାକୁ ଦୂରେଇ ଦେଇ ପାରିବିନି ।

ମୁକୁନ୍ଦ : ଅରେ ଫୁଲଟାକୁ ତୋଳି ନେଲାପରେ ଆଉ କ'ଣ ସେ ଗଛରେ ଝୁଲିପାରେ ବାବୁ । ମୁଁ ତ ମୂରୁଖ ଲୋକ । ମୁଁ ବା ତୁମକୁ ଆଉ କ'ଣ କହିବି ।

ମ.ସ୍ୱା : ଭାଇ... (ମକୁନ୍ଦକୁ ଜାବୁଡ଼ି ଧରି କାନ୍ଦି ପକାଇଛି)

ମକୁନ୍ଦ : ଦୁଃଖ କରନା ଭଉଣୀ । ଆଜି ମୋ ହାତରେ ଯେଉଁ ଦେଉଳର ମୁଣ୍ଡି ମ ଗଢୁ ସେ ଦେଉଳ ତ କୋଣାର୍କ ନୁହେ କୋଣାର୍କଠୁଁ ଆହୁରି ବଡ଼ । ସେ ଦେଉଳରେ ସିନା ପଥରର ମୂର୍ତ୍ତି ସବୁ ସ୍ଥାନ ପାଇଥିଲ, ହେଲେ ମୋ ହାତର ଗଢ଼ା ଦେଉଳରେ ଦୁଇଟି ଜୀବନ ମୂର୍ତ୍ତି । ଖାଲି ଝିଅ ବଡ଼ା ପରେ ବାଇ ଚଢ଼େଇର ବସା ପରି ସବୁବେଳେ ଝୁଲୁଥିଲେ ସେଇଥିରେ ମୁଁ ଆନନ୍ଦ ପାଇବ ।

(ଦୁହେଁ ମକୁନ୍ଦର ପାଦତଳେ ମୁଣ୍ଡ ଲଗାଇଲେ)

ଚକାଡ଼ୋଳା ତୁମମାନଙ୍କ ମଙ୍ଗଳ କରନ୍ତୁ । ତୁମ ଜୀବନ ସୁଖମୟ ହେଉ ।

—ଅଂଧାର—

## ନବମ ଦୃଶ୍ୟ

[ଗ୍ରାମ୍ୟପଥ—ପ୍ରବେଶ କଲେ କିଶୋର ଓ ଯୋଗୀ । କିଶୋର ଉତ୍ତ୍ୟକ୍ତ ହୋଇ କହି ଚାଲିଥାଏ]

କିଶୋର : ମୂର୍ଖ...

ଯୋଗୀ : ହଁ ଆଜ୍ଞା ।

କିଶୋର : ବୋକା....

ଯୋଗୀ : ହଁ ଆଜ୍ଞା ।

କିଶୋର : ତୋ ଦେଇ କିଛି ହୋଇ ପାରିବନି ।

ଯୋଗୀ : ହଁ ଆଜ୍ଞା ।

କିଶୋର : ଜୀବନର ପ୍ରତି ପଦକ୍ଷେପରେ ମୁଁ କେତେ ଚେଷ୍ଟା କରିଛି ଜାଣ୍ତ ? ବନ କୁସୁମ ବନରେ ଝଡ଼ିଯିବ । ନା, ମୁଁ ତାକୁ କେବେ ଝଡ଼ିବାକୁ ଦେବିନି । ତୋଳି ଆଣି କଣ୍ଠସ୍ଥ ମାଳା କରି ରଖିବି ।

ଯୋଗୀ : ହଁ ଆଜ୍ଞା ।

କିଶୋର : ଟଙ୍କା, ଟଙ୍କା ମୋର ଅପର୍ଯ୍ୟାପ୍ତ ଅଛି । ବୁଝିଲୁ ଯୋଗୀ, କଳେ, ବଳେ, କୌଶଳେ ତାକୁ ହାତ ମୁଠାକୁ ଆଣିବାକୁ ହେବ ।

ଯୋଗୀ : ହଁ ଆଜ୍ଞା ବୁଝିଲି ।

କିଶୋର : କ'ଣ ବୁଝିଲୁ ?

ଯୋଗୀ : ହଁ ଆଜ୍ଞା, ଆପଣ ଯାହା କହିଲେ ।

କିଶୋର : What ହଁ ଆଜ୍ଞା, ହଁ ଆଜ୍ଞା ? କାମ କରିବାକୁ ପଡ଼ିବ ।

ଯୋଗୀ : ମୁଁ ତ ଆଜ୍ଞା ଚେଷ୍ଟା ଚଳେଇଛି ।

କିଶୋର : ଖାଲି ଚେଷ୍ଟା ଚଳେଇଲେ ହେବନି । କାମ କରିବାକୁ ପଡ଼ିବ । ପାଠ ପଢ଼ି ଏ ଦୁନିଆରେ କେହି କେବେ ବଡ଼ ହୁଏନି । ବଡ଼ ହେବା ପାଇଁ ଦରକାର ପ୍ରଚୁର ଅର୍ଥ । ସେ ଅର୍ଥ ମୋର ଯଥେଷ୍ଟ ଅଛି । ଯେତେବେଳେ ଯାହା ଦରକାର ହେବ ମୁଁ ତତେ ଦେବି ।

ଯୋଗୀ : ହଁ ଆଜ୍ଞା ମୁଁ ନେବି ।

କିଶୋର : ତତେ ଖାଲି ସେ ମୁକୁନ୍ଦଟାକୁ ମନେଇବାକୁ ହେବ । ପାଦରେ ଦଳିବା ଫୁଲକୁ ପୁଣି ମଥାରେ ନାଇଲେ ଅବସ୍ଥା ଯାହା ହୁଏ ମୋ ଅବସ୍ଥା ଆଜି ସେଇଆ ହୋଇଛି ।

ଯୋଗୀ : ହଁ ଆଜ୍ଞା । ତା' ନ ହେଲେ ବଡ଼ା ବଡ଼ା ନୋଟକୁ ସେ ଗୋଡ଼ରେ ଆଡ଼େଇ ଦିଅନ୍ତା । ମତେ ଯଦି ସେ ବାହା ହୋଇ ଥାଆନ୍ତା ଆଜ୍ଞା, ଆ ହା, ହା... ସେ ଯେଉଁ ହସରେ ବାପା ।

କିଶୋର : ଗରିବ ଘରର ଝିଅ ମାଧୁରୀ । ସେ ପୁଣି ବାଲିଙ୍ଗେଲ ଠାରୁ ମୋତେ ଅପମାନ ଦେଇ ଆସିଛି । ରଜ୍, ମାଧୁରୀକୁ ଏ ସମାଜ ଆଗରେ... ।

ଯୋଗୀ : "ସମାଜ" ତ ଆସିଥିଲା ଆଜ୍ଞା ।

କିଶୋର : No man that is newspaper । ଜାତି ଭୁଲ ଆଉ ସମାଜର ଆଗିରେ ଧୂଳିଦେଇ ରାଜୁ କ'ଣ ଗୋଟାଏ କେଉଁଠି ଘର ଝିଅକୁ ବୋହୂ କରି ଘରକୁ ଆଣିପାରିବ ? ଆଉ ଦାନବଂଶୀ ମହାନ୍ତି କ'ଣ ଏଥିରେ କିଛି ବାଧା ଦେବେନି ? ଆଚ୍ଛା ମୁଁ ମଧ୍ୟ ଦେଖିବ... ।

ଯୋଗୀ : ଆଜ୍ଞା, ମକୁନ୍ଦାଇ ଆଜି କ'ଣ ଗୋଟେ ପୋଷ୍ଟ ବାକ୍ସରେ ପକେଇ-ଦେଇ ଆସିଲା । ନେଳି ନେଳି ଦିଶୁ ଥିଲା ଆଜ୍ଞା ।

କିଶୋର : ମକୁନ୍ଦ ପୁଣି post-box !!!

ଯୋଗୀ : ମୁଁ ପଚ୍ଚରିବାରୁ କହିଲା "କଟକକୁ ଚିଠି ପଠାଇଲି" । ରାଜୁ ବାବୁଙ୍କ ପାଖକୁ ହୋଇଥିବ ।

କିଶୋର : Right indeed ! ଏଥିରେ ସନ୍ଦେହ କରିବାର କିଛି ନାହିଁ । ଚିଠି ଜରିଆରେ ତା' ହେଲେ ଖୁବ୍ କାମବାଣ ମରାହାଇପାରୁଛି ନୁହେଁ... ?

ଯୋଗୀ : ହଁ ଆଜ୍ଞା, ବାଣ ବୋଇଲେ ବାଣକି ? ଅହା-ହା-ହା-ସେ ଯେଉଁ ହସରେ ବାପା... ।

କିଶୋର : ଗୋଟାଏ କାମ କରିବାକୁ ପଡ଼ିବ ।

ଯୋଗୀ : ମୁଁ ପ୍ରସ୍ତୁତ ଅଛି ଆଜ୍ଞା । ମରେ ବୋଇଲେ ମରିବ ।

କିଶୋର : ଯା, ତୋ ଦେଇ କିଛି ହୋଇ ପାରିବ ନାହିଁ । ପୋଷ୍ଟମ୍ୟାନକୁ ହାତକରି ରାଜୁର ସମସ୍ତ ଚିଠି ମତେ ହସ୍ତଗତ କରିବାକୁ ହେବ ।

ଯୋଗୀ : ହଁ ଆଜ୍ଞା ।

କିଶୋର : ତା' ପରେ କ'ଣ ହେବ ଜାଣୁ ?

ଯୋଗୀ : କ'ଣ ହେବ ?

କିଶୋର : ପ୍ରେମିକାଙ୍କ ଚିଠି ପାଇବେ ପ୍ରେମିକ ଆଉ ପ୍ରେମିକଙ୍କ ଚିଠି ପାଇବା ଆମେ ।

ଯୋଗୀ : କିନ୍ତୁ ଆଜ୍ଞା .....

କିଶୋର : କିନ୍ତୁର ପ୍ରଶ୍ନ ଉଠୁଛି କାହିଁକି ? ମାଷ୍ଟର ଚିଠି ରାଜୁ ପାଇବ କିନ୍ତୁ ରାଜୁର ଚିଠି ପାଇବା ଆମେ । ଦରକାର ହେଲେ Post-box ରୁ ମଧ୍ୟ... ।

ଯୋଗୀ : ବୁଝିଲି ଆଜ୍ଞା ।

କିଶୋର : ହେଲେ ଫଳାଫଳ କ'ଣ ହେବ ଜାଣୁ ? କ୍ରମେ କ୍ରମେ ରାଜୁ ଉପରୁ ମାଷ୍ଟର ଆସ୍ଥା ତୁଟିଯିବ । ଆଉ ଠିକ ସେତିକି ବେଳେ ମାଷ୍ଟରଙ୍କୁ ମୁଁ ଦେଖେଇଦେବି ବଡ଼ ଘରର ପୁଅମାନେ କେମିତି କ୍ଷଣିକ ଉତ୍ତେଜନାରେ ଜଣକର ଜୀବନକୁ ମାଟି କରି ଦିଅନ୍ତି । ତୁ ପ୍ରସ୍ତୁତ ଥିଲେ...

ଯୋଗୀ : ମୁଁ ଖିଅରବାର ହୋଇ ପ୍ରସ୍ତୁତ ଆଜ୍ଞା । ସେନିମିତ୍ତ ପାଇଁ ଆପଣ ଟିକି ସାହାଯ୍ୟ କଲେ ହେଲା । ଆପଣଙ୍କ ପ୍ଲାନଟା ମୋ ମନକୁ ପାଇଲା । ଏଇଟା ଠିକ୍ ହେବ ।

କିଶୋର : ଟିକି ଠିକ୍ ହେବନି ମିଷ୍ଟର୍ ଯୋଗୀ ! ଏ ହେବ ଏକ ପାଶୁପତ ଅସ୍ତ୍ର । (ଟଙ୍କା ଦେଇ) ଠିକ୍ କାମକରି ଫେରିବୁ । (ହ୍ୱିସ୍କି ବୋତଲ ଆଣିବାର ଆଭାସ ଦେଇ) ଆଣିବୁ ।

ଯୋଗୀ : ହଁ ଆଜ୍ଞା ।

କିଶୋର : ବୁଝିଲୁ ଯୋଗୀ, ହ୍ୱିସ୍କିର ଆଗ୍ରହ ନେଇ ମୁଁ ସବୁ କିଛି ଭୁଲିଯାଏ ।

ଯୋଗୀ : ଭୁଲି ଯିବାଟା ଲେଡ଼ା ଆଜ୍ଞା । ହେଲେ ମୋ ବାହାଦର କଥାଟା-.. ଆ-ହା-ହା-ହା ସେ ଯେଉଁ ହସରେ ବାପା ।

କିଶୋର : ଠିକ୍ ସମୟରେ ଆସି ପହଞ୍ଚିବୁ । ଏକଥା ଯେପର କାହା ଆଗରେ ପ୍ରକାଶ ନ କରୁ ।

ଯୋଗୀ : କି କଥା କହୁଛନ୍ତି ଆଜ୍ଞା ମୁଣ୍ଡ ଉପରେ ବାହାଘର । ସୋମରସ କଥାଟା ପ୍ରକାଶ କରିବ ?

(ଯୋଗୀ ଚାଲିଯାଉଛି । ମୁକୁନ୍ଦ ସେଇ ବାଟଦେଇ ଚାଲିଗଲା ବେଳେ କିଶୋର ପଛରୁ ଡାକିଛନ୍ତି)

କିଶୋର : କହୋ ମକୁ, କ'ଣ ମୁଣ୍ଡ ପୋଡ ପୋଡ ବୁଲାଯାଉଛ ?

ମକୁନ୍ଦ : ସମସ୍ତ ହୋଇ ଗଲଣି । ଯାଉଛୁ ତେଣେ ରିହାର୍ସଲ୍ ହେବ ।

କିଶୋର : ଏଥର ତୁମେ କି ନାଟକ କରୁଛ ମକୁ ?

ମକୁନ୍ଦ : କେଦାର-ଗୌରୀ ।

କିଶୋର : ଖୁବ୍ ଭଲ ହେବ । ଆଚ୍ଛା ମକୁ, ତୁମେ ଯାତ୍ରା ଦଳରେ କେବେ ନାରଦ ପାର୍ଟ କରିଥିଲ ?

ମକୁନ୍ଦ : କାହିଁକି ଆଜ୍ଞା ?

କିଶୋର : ତୁମଠି ନାରଦ ପାର୍ଟ କରିବାର ଯୋଗ୍ୟତା ଯଥେଷ୍ଟ ଅଛି । ନ ହେଲେ ଏ ସମ୍ବାଦ ପରିବେଷଣ କାର୍ଯ୍ୟଟା ସୁନ୍ଦରରୂପେ ତୁଲାଇ ପାରି ନ ଥାନ୍ତ... । କ'ଣ ବୁଝି ପାରୁନ ? ମାନେ ଏଇ ଠେଇ ସବ କାରବାର— ।

ମକୁନ୍ଦ : ଠେଇ ସବ କାରବାର ?

କିଶୋର : ଆଚ୍ଛା, ମାଷ୍ଟ୍ରା କ ଠେଇ ଦେଇଥିଲ ରାଜୁ ପାଖକୁ ?

ମକୁନ୍ଦ : ଆପଣ ହୋସରେ ଅଛନ୍ତି ତ ଆଜ୍ଞା ?

କିଶୋର : କ'ଣ କହିଲ ? କିଶୋର ହୋସ୍‌ରେ ନାହିଁ । ତୁମେ ସବୁ ଅଛନା ? Soft word breaks no bones, କଅଁଳ କଥାରେ ହାଡ଼ ଭାଙ୍ଗେନା ।

ମକୁନ୍ଦ : ଆପଣ କ'ଣ କହିବାକୁ ଚାହାନ୍ତି ?

କିଶୋର : ଫଳାଫଳ ଭଲ ହେବନି ।

ମକୁନ୍ଦ : ମାନେ ?

କିଶୋର : ରାଜୁ ଜମିଦାରର ପୁଅ ଆଉ ମାଷ୍ଟ୍ରା...

ମକୁନ୍ଦ : କିଶୋର ବାବୁ ! ମାଷ୍ଟ୍ରା ମୋ ଭଉଣୀ ।

କିଶୋର : ଓଃ... ସମ୍ପର୍କଟା ଖୁବ୍ ଶୀଘ୍ର ଯୋଡ଼ି ହୋଇ ଯାଉଛି ବୋଧହୁଏ ।

ମକୁନ୍ଦ : ହଁ, ଆପଣଙ୍କ ପରି କେତେ ଜଣଙ୍କ ପାଇଁ—

କିଶୋର : What ?

ମକୁନ୍ଦ : ମକୁ ଯାହା ଦଳରେ ପାର୍ଟ କରେ ବୋଲି ସେ ମୂର୍ଖ କି ବୋକା ନୁହେ । କେହି ନ ଜାଣିଲେ ମଧ୍ୟ ଖିମର ବଳ କୁନ୍ତିଙ୍କୁ ଜଣା । ଆପଣଙ୍କ ପରି ଲୋକମାନଙ୍କୁ କେମିତି ରାସ୍ତାକୁ ଆଣିବାକୁ ହୁଏ ସେ ବେଶ୍ ଜାଣେ । ଆଉ ଦିନେ ଯଦି ଏକଥା ଉଠାନ୍ତି ତାହାହେଲେ ମକୁନ୍ଦିର ଅସଲ୍ ରୂପଟା ଦେଖିନେବେ । (ଚାଲି ଯାଇଛି)

କିଶୋର : All right, ମୁଁ ବି ଦେଖିନେବି, ମାସ୍ତା କେତେ ଦିନ ଏ ଗାଁରେ ରହି ରାଜୁ ପାଖକୁ ଚିଠି ପତ୍ର ଦିଆ ନିଆ କରିବ । ଆଉ ତୁ ତା'ର ସମ୍ବାଦ ସରବରାହ କେନ୍ଦ୍ରକୁ କପରି ସ୍ଥାୟୀରୂପେ ଚାଲୁ ରଖିବୁ ?

—ଅଂଧାର—

## ଦଶମ ଦୃଶ୍ୟ

[ସହରରେ ରାଜୁର ବସାଘର—ଟେବୁଲ, ଚୌକି, ବହିପତ୍ର, ସମସ୍ତ ସକାଳ । ସପନ ସଫାସୁତୁରା କାମରେ ବ୍ୟସ୍ତ । ଦାନ୍ତ ଘଷି ଘଷି ପ୍ରବେଶ କଲା ରାଜୁ—ହାତରେ କିଛି ସମ୍ବାଦପତ୍ର]

ରାଜୁ : କିରେ ସପନ ! ଆଜି କ'ଣ ଖୁବ୍ ସକାଳଟାରୁ କାମରେ ଲାଗିପଡ଼ିଛୁ ?

ସପନ : ସକାଳ ହୋଇଛି ବାବୁ ! ବେଳ ଆସି ପହରେ ହେଲାଣି ପରା । ତୁମେ କ'ଣ ଆଜି କଲେଜ ଯିବନି ବାବୁ ?

ରାଜୁ : ଆଜି ପରା କଲେଜ ଛୁଟି ।

ସପନ : ତୁମେ ଯାଅ ବାବୁ, ଜଲ୍‌ଦି ଗାଧୁଆ ସାରିଦଅକି ମୁଁ ଜଳଖିଆ କରି ଦେଉଛି ଖାଇବ । ନ ହେଲେ ଥଣ୍ଡା ହୋଇଯିବ ।

ରାଜୁ : (ହସି) ଆଚ୍ଛା, ଆଚ୍ଛା ମୁଁ ଯାଉଛି । (ଭିତରକୁ ଚାଲିଗଲେ)

[ପ୍ରବେଶ କଲା ଶରତ । ରାଜୁର ବନ୍ଧୁ । ସମ ବୟସ୍କ ।]

ସପନ : ଆସନ୍ତୁ ବାବୁ, ଆସନ୍ତୁ । ବାବୁ ଏଇ ସଙ୍ଗେ ସଙ୍ଗେ ଗାଧୁଆ ଘରକୁ ଯାଇଛନ୍ତି । ଆପଣ ଟିକିଏ ଅପେକ୍ଷା କରନ୍ତୁ, ଆସିଯିବେ ।

ଶରତ : (ବସି) ଆଚ୍ଛା ତୁମେ କ'ଣ... ?

ସପନ : ମୁଁ ଆଜ୍ଞା, ବାବୁଙ୍କର ସବୁ କିଛି ।

ଶରତ : ମାନେ ?

ସପନ : ବୁଝି ପାରିଲେନି ଆଜ୍ଞା, ମୁଁ ସପ୍ନ ବାବୁଙ୍କର ଚାକର ।

ଶରତ : ତୁମେତ ଆଗରୁ ଏଠି ନଥିଲ । ଏବେ ଆସିଲ ବୋଧହୁଏ ।

ସପନ : ଏଠି ନଥିଲି ଆଜ୍ଞା । ହେଲେ, ଗାଁରେ ଥିଲି । ଅନେକ ଦିନ ହେଲା ବାବୁଙ୍କର ଘରେ ରହି ବୁଢ଼ା ହୋଇ ଗଲିଣି ।

ଶରତ : ଓଃ... ସେଥିପାଇଁ କହୁଛ ବାବୁଙ୍କର ସବୁକିଛି ।

ସପନ : ହଁ ଆଜ୍ଞା । ମୁଁ ବାବୁଙ୍କ ଘରକୁ ଆସିଲାବେଳେ ବଡ଼ ବାବୁ ରାଜୁ ବାବୁଙ୍କ ବୟସର । ସାନବାବୁଙ୍କୁ କୋଳେଇ କାଖେଇ ମଣିଷ କରିଛି । କାନମୋଡ଼ି ମଧ୍ୟ ଶାସନ କରିଛି ।

ଶରତ : ତା' ହେଲେ ତୁମେ ରାଜୁ ବାବୁଙ୍କ ଘରେ ଜଣେ ହୋଇ ଚାଲି ଆସିଛନା ?

ସପନ : ହଁ ଆଜ୍ଞା, ଆଚ୍ଛା ମୁଁ ଭିତରୁ ଆସୁଛି ।

[ଚାଲିଗଲା । ଶରତ ବସି ପତ୍ର ପତ୍ରିକା ଦେଖୁଥିଲା କିଛି ସମୟ ପରେ ପ୍ରବେଶ କରିଛି ରାଜୁ ।]

ରାଜୁ : ଆରେ ଶରତ ଯେ..., କେତେବେଳେ ଆସିଲୁ ?

ଶରତ : ଏଇ Just ଆସିଲି ।

ରାଜୁ : ସପନ ! ଚା, ନେଇ ଆ'ତ ।

[କିଛି ସମୟ ପରେ ସପନ ଚା' ଜଳଖିଆ ଦୁହିଁଙ୍କ ପାଇଁ ଆଣି ଟେବୁଲ ଉପରେ ଥୋଇ ଦେଇ ଚାଲିଯାଇଛି । ]

ଶରତ : ଆଚ୍ଛା ରାଜୁ, ଗାଁରୁ ଫେରିଲୁ, ଆଉ ଭୋଜି ଦେବୁନାହିଁ ?

ରାଜୁ : ଭୋଜି ?

ଶରତ : ହଁ, ଭୋଜି । ଆଚ୍ଛା ଶୁଣ, ଆଜି ଜଳଖିଆଟା ଖାଇନିଏ । ଭୋଜିଟା ବାକି ରହିଲା । (ଜଳଖିଆ ଖାଇଛନ୍ତି) ଆଉ ସବୁ ହାଲଚାଲ କ'ଣ ରାଜୁ, ଭାଉଜ କେମିତି ଅଛନ୍ତି ? କାହିଁ ମତେ ଏ ସବୁ ତ କିଛି କହିଲୁ ନାହିଁ ।

ରାଜୁ : ଆରେ, କିଛି ତ ହୋଇନାହିଁ । ଆଉ ତତେ କହିବି କ'ଣ ?

ଶରତ : କିଛି ଦେବାକୁ ପଡ଼ିବ ବୋଲି ବୋଧହୁଏ...

ରାଜୁ : ତେବେ ଶୁଣ । ତତେ ତ ମୋର କୌଣସି କଥା ଅଛପା ନାହିଁ । ଆମ ଦୁହିଁଙ୍କର ବାହାଘର ହୋଇଗଲା ।

ଶରତ : ମାନେ ବାପା ତୋର ରାଜି ହେଲେ ?

ରାଜୁ : ଏମିତି ଅସବର୍ଣ୍ଣ ବାହାଘର ପାଇଁ ବାପା କ'ଣ କେବେ ରାଜି ହୁଅନ୍ତେ ?

ଶରତ : ଆଉ ତେବେ ?

ରାଜୁ : ଗାନ୍ଧର୍ବ ରୀତିରେ ଆମ ବାହାଘର ସରିଚି । ଆମ ବାହାଘରର ସାକ୍ଷୀ କେବଳ ଦୁଇଟି ଫୁଲମାଳ ଆଉ ମକୁନ୍ଦାଇ ।

ଶରତ : ମକୁନ୍ଦାଇ ।

ରାଜୁ : ହଁ, ମାଷ୍ଟ୍ରାର ପିଉସୀ ପୁଅ ଭାଇ ସେ । ତା'ର ପ୍ରେରଣା କାହିଁକି ଆପ୍ରାଣ ଚେଷ୍ଟା ଏବଂ ଉତ୍ସାହରେ ସବୁ କିଛି ସମ୍ଭବ ହୋଇ ପାରିଛି ।

ଶରତ : ତା' ହେଲେ ନିଶ୍ଚୟ ଗୋଟାଏ ଦାମିକା ପାର୍ଟିର ଆଶାରେ ରହିଲି ।

ରାଜୁ : ଖାଇବୁ ଶରତ । ଅପେକ୍ଷା କର, ମାଷ୍ଟ୍ରା ଯେଉଁଦିନ ବୋହୂ ବେଶ ସାଜି ଆମ ଘରକୁ ଆସିବ, ସେ ଦିନ ମାଷ୍ଟ୍ରା ପରଷିବ, ଆଉ ତୁ ଖାଇବୁ ।

ଶରତ : ତେବେ ଭାଉଜଙ୍କ ଆବିର୍ଭାବ ପୁଣି କେବେ ହେବ ?

ରାଜୁ : ଭାଉଜଙ୍କ ଆବିର୍ଭାବ ଏତେ ସହଜ ନୁହେ ଶରତ । ସେଥିପାଇଁ ସମାଜ କେତେ ବଦନାମ୍ କରିବ । ଅନେକ ବାଧା ବିଘ୍ନ ଆସିବ । ସେସବୁ ଝଡ଼ ଝଞ୍ଜା ସହି ପାରିଲେ ମାଷ୍ଟ୍ରା ଭାଉଜ ତୋର ଘରକୁ ଆସିବ ।

ଶରତ : ସେଥିପାଇଁ ଶରତ ଅଛି । ପ୍ରତି ପଦେ ପଦେ ସେ ତୋତେ ସାହାଯ୍ୟ କରିବ ।

ରଞ୍ଜୁ : Thanks... ।

(ଠିକ ବେଳେ ବାହାରୁ ଗୀତାର ସ୍ୱର ଶୁଣାଗଲା)

ଗୀତା : May I go out... ?

ରଞ୍ଜୁ : No out please, get in.

ଶରତ : କିଏ ? ଗୀତା ! ଆରେ ଆସୁନା । (ଗୀତା ପ୍ରବେଶ କରିଛି) ଅଚ୍ଛା ରଞ୍ଜୁ ତୁ ବସି କଥାବାର୍ତ୍ତା କରୁଥା । ମୋର ଟିକିଏ କାମ ଅଛି । ମୁଁ ଯାଉଛି । ଯାଉଛି ଗୀତା ।

ରଞ୍ଜୁ : ହେଉ, ଯା' ଶରତ । ପୁଣି କେତେବେଳେ ଆସିବୁ । (ଶରତ ଚାଲିଯାଇଛି) କୁଆଡ଼େ ଚାଲିଆସିଲ ଗୀତା ?

ଗୀତା : ଆପଣ ସପ୍ତାହେ ହେଲା ଗାଁରୁ ଆସିଲେଣି ଅଥଚ ମୁଁ ଆଜି ଶୁଣିଲି ।

ରଞ୍ଜୁ : କାହିଁକି ? କ'ଣ କାମ ଥିଲା ମୋ ପାଖରେ ?

ଗୀତା : ମୋର ଜଣେ ଟ୍ୟୁଟର ଦରକାର । ଦୟାକରି ଆପଣ ଯୋଗାଡ଼ କରିଦେଲେ ଖୁବ୍ ଭଲ ହୁଅନ୍ତା ।

ରଞ୍ଜୁ : ଆଚ୍ଛା ତୁମେ କାଲି ଆସ । ମୁଁ ଯୋଗାଡ଼ କରିଦେବି ।

ଗୀତା : ଆଚ୍ଛା ରଞ୍ଜୁଭାଇ କିଛି ଯଦି ମନେ କରନ୍ତି ତେବେ ଆପଣ ସାମାନ୍ୟ କଷ୍ଟ କଲେ ଟ୍ୟୁଟର ଅପେକ୍ଷା ଭଲ ହୁଅନ୍ତାନି ?

ରଞ୍ଜୁ : ତୁମେ ସେଥିପାଇଁ ଚିନ୍ତା କରନାହିଁ । ମୁଁ ଜଣେ ଭଲ ଟ୍ୟୁଟର ଯୋଗାଡ଼ କରିଦେବି ।

ଗୀତା : କିନ୍ତୁ ଆପଣଙ୍କ ଅପେକ୍ଷା ସେ କେଉଁ ଗୁଣରେ ଭଲ ହେବ କହିଲ ? ଆଜି କାଲିତ ଶିକ୍ଷକମାନଙ୍କ ପଢ଼ାଇବା ମନୋବୃତ୍ତି ଦେଖୁଥିବେ । କେବଳ ପଇସା ସଂପର୍କ କଥା ।

ରଞ୍ଜୁ : ତେବେ, ଦେଖୁଛତ ମୋର ସମସ୍ତ ଅଭାବ ।

ଗୀତା : ଆପଣ ସେ ଖରଚ ନଅନ୍ତୁ ରଞ୍ଜୁଭାଇ । ଖୁବ୍ ଭଲ ହେବ । Please... ।

ରାଜୁ : କିନ୍ତୁ ମୁଁ... ଆଚ୍ଛା, ସମସ୍ତ ସୁବିଧା ଦେଖି ତୁମେ ଆସ ! ମୋ ଉପରେ ପୂରାପୂରି ନିର୍ଭର କଲେଇ ଚଳିବନି ।

ଗୀତା : ଯେତେଟା ପାରିବେ । ଆଚ୍ଛା ମୁଁ ଆସେ । ତେଣେ ସାଙ୍ଗମାନେ ଅପେକ୍ଷା କରିଥିବେ । କାଲି ମୁଁ ଆସିବି । Many thanks for your kind help.

(ଗୀତା ଖୁସି ହୋଇ ଯିବାକୁ ବସିଲି ବେଳେ)

—ଅଂଧାର—

## ଏକାଦଶ ଦୃଶ୍ୟ

[ଦନେଇ ବେହେରାଙ୍କ ପୂର୍ବ ବର୍ଣ୍ଣିତ ଘର । ମାୟା ଓ ଦନେଇ ଠିଆ ହୋଇଛନ୍ତି । ମାୟା ଆଖିରେ ଲୁହ । ଦନେଇ ମାୟାକୁ ତା ବିବାହ ପ୍ରସଙ୍ଗରେ ରାଜି କରେଇବା ପାଇଁ ବୁଝେଇବାରେ ଲାଗିଛନ୍ତି]

ଦନେଇ : ତୁ ରାଜି ହୋଇ ଯା ମା' । ମୁଁ ତା ଆଉ କେଇଟା ଦିନ ବଞ୍ଚିବି ଯେ । ତୁ ଅବୁଝା ହୁଅନା ମା' ।

ମାୟା : ମୋ ତଣ୍ଟି ଚିପି ଏଇ ପାଖ ନଈରେ ଭସେଇ ଦିଅ ବାପା । ସେଠି ବାହା ହେବା ଅପେକ୍ଷା ମରିବା ବରଂ ଭଲ ।

ଦନେଇ : ଆଉ ବା କ'ଣ ଉପାୟ ଅଛି କହୁଚୁ ମା' ? ଆମ ଭାଗ୍ୟରେ ଭଗବାନ ଯାହା ଦେଇଛନ୍ତି ସେଥିରେ ସନ୍ତୁଷ୍ଟ ହେବା ଉଚିତ ।

ମାୟା : ନା' ବାପା ନା, ତୁମେ ଯଦି ନ ପାରିବ ତା' ହେଲେ ମତେ ଟିକିଏ ବିଷ ଦେଇଦିଅ ବାପା । ମୁଁ ନିଜ ହାତରେ ଖାଇ ମରିବି ପଛେ, ସେଠି ବାହା ହେବା ଯାହା ହାତରେ ନ ମାରି ଭାତରେ ମାରିବା ସେଇଆ ।

ଦନେଇ : ତା' ହେଲେ ତୋ ଅବସ୍ଥା କ'ଣ ହେବ କହିଲୁ ମା' ? ମୁଁ ଆଜି ଅଛି କାଲି ତୋ ମା' ଭଳି ଚାଲିଯିବି । ତୋର ହୋଇ ଆଉ କିଏ ଅଛି କହିଲୁ ମା' ? ମନୁଷ୍ୟ, ଆଜି ଆସୁଛି । କାଲି ପୁଣି କ'ଣ ହେବ କିଏ କହି ପାରିବ ।

ମାୟା : ତା' ବୋଲି ବାପା ! ମୋ ଜୀବନଟାକୁ କ'ଣ ମୁଁ ଏମିତି ଛାରଖାର କରିଦେବି ? ତା' ହେଲେ ପାଳି ପୋଷି ଏମିତି ବଢ଼େଇ ଆଣିଲ କାହିଁକି ? ବରଂ ପିଲଟି ବେଳରୁ... ।

ଦନେଇ : ତୁ ବୁଝିପାରୁନୁ ମା' । ମୋ ପରେ ତତେ ମୁଣ୍ଡ ଗୁଞ୍ଜି ରହିବାକୁ ଜାଗା ମଧ୍ୟ ମିଳିବନି । ଘର ବନ୍ଧକ ଦେଇ ଯେତେବେଳେ ଋଣ କରିଛି ଆଉ କ'ଣ ତାହା ମୁକ୍ତି ହେବନି ଏ ଘର ଆଉ ଆମର ହୋଇ ରହିବ ।

ମାୟା : ବରଂ ଭିକ ମାଗି ପରିଓଳି ତଳେ ଆଶ୍ରୟ ନେବି ବାପା ! ହେଲେ ଅପାତ୍ରରେ... । ମତେ ଯଦି ବାଧ୍ୟ କର, ଏ ବାହାଘର ପୂର୍ବରୁ ତମ ଝିଅ ଆଉ ଜୀବନରେ ନଥିବ ।

ଦନେଇ : ମାୟା !!!... ମୁଁ ମରିବା ପୂର୍ବରୁ ତୋର ସୁଖ ଟିକକ ଦେଖି ଦେଲେ ମରିଥାନ୍ତି । ହେଲେ ଦେଖୁଛୁ ମାୟା, ଭଗବାନ ସେତକ ମଧ୍ୟ କରେଇ ଦେବେନି ।

ମାୟା : ମୋ ମା' ଆଜି ବଞ୍ଚିଥିଲେ ତୁମେ କ'ଣ ଏକଥା କରି ପାରନ୍ତ ବାପା । ମୁଁ ଯଦି ତୁମଉପରେ ବୋଝ ହୋଇଛି, ମୁଁ ଯଦି ତୁମର ଗଳଗ୍ରହ ହୋଇଛି, ତେବେ ମୋର ବହୁତ ଆଗରୁ ମରିବା ଉଚିତ ଥିଲା । ହେଲେ ମରନି ଯେତେବେଳେ ତୁମେ ନିଜ ହାତରେ ତଣ୍ଟି ଚିପି ମାରିଦିଅ ବାପା ।

(ଦନେଇର ହାତ ଧରି ଗଳାପାଖକୁ ନେବା)

ଦନେଇ : ମାୟା-!!! ଦେଖୁଛ, ଦେଖୁଛ ମାୟା ବୋଉ, ତୁମେ ସେ ପୁରରେ ଥାଇ ଦେଖୁଛ । ନା' ତୁମେ ଚାଲିଯାଇ ସୁଖି ହୋଇ ଯାଇଛ । ମୁଁ ଯାହା ବଞ୍ଚିଥିଲି ଏ ସବୁ ଦେଖିବାକୁ ।

ମାୟା  : ବାପା... ! (ଦନେଇ କାନ୍ଧରେ ମୁହଁ ଲୁଚେଇ କାନ୍ଦି ଉଠିଲ)
ଦନେଇ : ତତେ ଦୁରେଇ ଦେବାକୁ ନୁହେଁରେ ମା', ତୋ'ର ବାହାଘର... ।
ମକୁନ୍ଦ : (ପ୍ରବେଶ କରି) ବାହାଘର ? କାହାର ମାମୁଁ, ଆମକୁ କିଛି ଖୋଜି ମିଳିବନି ? ମାୟାରତ ବାହାଘର ହୋଇ ସାରିଛି ।

(ଭିତରକୁ ଚାଲିଯାଇଛି ମାୟା)

ଦନେଇ : କ'ଣ କହୁଛୁ ମକୁ ? ମାୟାର ବାହାଘର ହୋଇ ସାରିଛି !!!
ମକୁନ୍ଦ : ହଁ, ମାମୁଁ, ମାୟାର ବାହାଘର ହୋଇ ସାରିଛି ।
ଦନେଇ : କେବେ ? କାହା ସହିତ ?
ମକୁନ୍ଦ : ଯୋଉ ନଈ କୂଳରେ ପିଲା ଦିନରୁ ମାୟା ରାଜୁ ବାବୁଙ୍କ ସହିତ ବାଲି ଖେଳ ଖେଳି ଆସିଥିଲା, ସେଇ ନଈକୂଳରେ ମାୟାର ବାହାଘର ସରିଛି ରାଜୁ ବାବୁଙ୍କ ସାଙ୍ଗରେ ।
ଦନେଇ : ମକୁ !!!
ମକୁନ୍ଦ : ହଁ ମାମୁଁ ! ଏହି ବାହାଘର କରିଛି ମୁଁ । ନିଜେ ମୁଁ ଦୁହିଁଙ୍କ ହାତ ଛନ୍ଦି ଦେଇ ଦୁଇଟି ଫୁଲମାଳ ଦୁହିଁଙ୍କ ଗଳାରେ ପିନ୍ଧାଇ ଦେଇଥିଲି
ଦନେଇ : ନା, ନା ମକୁ । ସେ ସବୁ...
ମକୁନ୍ଦ : ମିଛ କହୁନି ମାମୁଁ । ମୋ ନିଜ ହାତରେ ମୁଁ...
ଦନେଇ : କିନ୍ତୁ ମକୁ, ମୋ ଜାତି କୁଳ ଆଉ ସମାଜ...
ମକୁନ୍ଦ : ଦେଖିଛି ମାମୁଁ ଦେଖିଛି । ଏମିତି କେତେ ସମାଜ ଦେଖିଛି । ଏହିପରି ଶହ ଶହ ସମାଜରେ ତ ମୁଁ ପାର୍ଟ କରି ଆସିଛି । ଆଉ ସମାଜ ମୋର କ'ଣ କରିବ ?
ଦନେଇ : ଏଇଟା ନାଟକ ନୁହେଁ ମକୁ । ରାଜୁ ଯେ ବଡ ଘରର ପୁଅ ।
ମକୁନ୍ଦ : ଏଇତ ଜୀବନ୍ତ ନାଟକ ମାମୁଁ । କଥାରେ ଅଛି ପରା —

"ଯାହା ମନ ଯାହାକୁ ରସିଲା,
ସେ ତା'କୁ କିଆଫୁଲ ପରି ବାସିଲା" ।

ମୁଁ କ'ଣ ରାଜୁ ବାବୁଙ୍କୁ ଚିହ୍ନିନି ।

ଦଳେଇ : ଆଜିର କଥା କାଲିକି ନ ଥାଏ ମକୁ । ବଡ଼ ଲୋକ ସେ, ସେ ହୁଏତ ଭୁଲି ଯାଇଥିବେ । ମନେ ନ ଥିବ ତାଙ୍କର ମାଧୁରୀ କିଏ ।

ମକୁନ୍ଦ : କ'ଣ କହୁଛ, ଭୁଲିଯିବେ ? ଭୁଲିଗଲେ ମକୁନ୍ଦର ଠେଙ୍ଗା କ'ଣ ତାଙ୍କୁ ମନେ ପକେଇ ଦେବନି ?

ଦଳେଇ : ମାଧୁରୀର ବୋଉ ଏ ପୁରରୁ ଚାଲି ଯାଇ ଖୁବ୍ ଭଲ ହୋଇଛି ମକୁ । ମୁଁ ଥିଲି ଏ ସବୁ ଦେଖିବାକୁ । ହଉ, ଭଗବାନଙ୍କର ଯାହା ଇଚ୍ଛା । (କହୁ କହୁ ଚାଲି ଯାଇଛନ୍ତି)

ମକୁନ୍ଦ : ଆରେ ଜନକ ମହର୍ଷି ପାର୍ଟ କରିଛି. ଜାନକୀ ସ୍ୱୟମ୍ବରଟା କରି ପାରିଲି ଆଉ ଫେରେ ଏ ମାଧୁରୀ ସ୍ୱୟମ୍ବରଟା ମତେ ବଳେଇ ଯିବ । (ଡ଼ାକୁଛି) ମାଧୁରୀ, ମାଧୁରୀ ! ଏଣେ ଆସିଲୁ । (ମାଧୁରୀ ଆସିଛି) ତୁ ଆଜି ଆମ ନାଟକ ଦେଖି ଯିବୁଁନା ? ମୁଁ କେଦାର ଗୌରୀ (ନାଟକରେ ଦୂତ ପାର୍ଟ କରିବ ।

ମାଧୁରୀ : ମୁଣ୍ଡ ହଲାଇ ସମ୍ମତି ଜଣାଇଲା)

ମକୁନ୍ଦ : ଆସିବୁ । ହଁ ଖୁବ୍ ଭଲ ହେବ, ଦେଖିବୁ ।

(ମକୁନ୍ଦ ଚାଲି ଯାଇଛି; ମାଧୁରୀ ତାର ଯିବା ବାଟକୁ ଅନାଇ ରହିଥିଲା । ଆଖିରେ ଆନନ୍ଦାଶ୍ରୁ—)

—ଅଂଧାର—

## ଦ୍ୱାଦଶ ଦୃଶ୍ୟ

[ପୂର୍ବ ବର୍ଣ୍ଣିତ ରାଜୁର ବସାଘର । ଗୋଟିଏ ଚୌକି, ଗୋଟିଏ ଟେବୁଲ ଓ ଗୋଟାଏ ଖଟ ପଡ଼ିଛି । ଖଟ ଉପରେ ବସି ରାଜୁ ବହିଟିଏ ଓଲଟାଇବାରେ ଲଗିଛି । ଗୀତା ମଧ୍ୟ ଚୌକିରେ ବସି ବହିଟିଏ ଧରି ପଢୁଛି । ମଝିରେ ମଝିରେ କେତେବେଳେ କେମିତି ବହିରୁ ମୁହଁ କାଢ଼ି ରାଜୁ ଉପରେ ଦୃଷ୍ଟି ଢ଼ାଳିବାରେ ବ୍ୟସ୍ତ । ଉକ୍ତ ଦୃଷ୍ଟିରୁ ସ୍ପଷ୍ଟ ହେଉଥିଲା ଯେ ସେ ଯେପରି ରାଜୁ ଠାରୁ କିଛି ଆଶା କରୁଛି । ମନରେ ଉତ୍କଣ୍ଠା । କ୍ରମେ ସେ ବହି ବନ୍ଦକରି ପ୍ରେମ ବିହ୍ୱଳା ହୋଇ ଧୀରେ ଧୀରେ ଉଠିଯାଇ ରାଜୁ ନିକଟରେ ଖଟରେ ବସିପଡ଼ି ରାଜୁ ହାତରୁ ବହି ଛଡ଼େଇ ନେଇଛି]

ଗୀତା : ରାଜୁ ଭାଇ ! ଆଜି ପଢ଼ା ଏତିକିରେ ଥାଉ ।

ରାଜୁ : (ଗୀତାର ଅବସ୍ଥା ଲକ୍ଷ୍ୟକରି) ଗୀତା ! ତୁମେ ଏଣିକି ପଢ଼ା ପଢ଼ି କରିବା ପାଇଁ ଏଠିକି ଆସିବ ନାହିଁ ।

ଗୀତା : କାହିଁକି ? କ'ଣ ହେଲା ?

ରାଜୁ : ପଢ଼ାପଢ଼ିର ଆଗ୍ରହ ମୁଁ ତୁମଠି ଅନୁଭବ କରୁନି । ଯେତେବେଳେ ଆସିଲେ ଖାଲି ତୁମର ବାଜେ କଥାରେ ମନ । ଏମିତି ପଢ଼ିଲେ କ'ଣ ପାଠହବ ? ବରଂ ଏଣିକି ତୁମ ଘରେ ନିଜେ ପଢ଼ାପଢ଼ି କର । ଖୁବ୍ ଭଲହେବ ।

ଗୀତା : ମତେ ଦୂରେଇ ଦେବାକୁ ଯାଇ ତୁମେ ଏକଥା କହୁଛ ନା' ରାଜୁ ଭାଇ!

ରାଜୁ : କ'ଣ ଯେ ତୁମେ କୁହ ମୁଁ କିଛି ବୁଝି ପାରୁନି ।

ଗୀତା : ତୁମେ କିଛି ବୁଝି ପାରିବନି ରାଜୁ ଭାଇ ।

ରାଜୁ : ମାନେ... !!!

ଗୀତା : ସ୍ତ୍ରୀର ମନ ଚହ୍ନିବାର ଶକ୍ତି ତୁମଠି ନାହିଁ । ସ୍ତ୍ରୀ ପୁରୁଷକୁ ହୃଦୟ ଦେଇ ସ୍ନେହ କରେ । ହେଲେ ତା' ବଦଳରେ ସେ କ'ଣ ଚାହେଁ ତୁମେ କ'ଣ ଜାଣନା ?

ରାଜୁ : ଏ ସବୁ ତୁମେ କ'ଣ କହୁଛ ଗୀତା ?

ଗୀତା : ବାସ୍ତବ ସତ୍ୟ ମୁଁ କହୁଛି । ଏ ମୋର ମନଗଢ଼ା କଥା ନୁହେଁ । ପୁରୁଷର ସ୍ନେହ, ପ୍ରେମ, ଭଲ ପାଇବା ହିଁ ସ୍ତ୍ରୀର କାମ୍ୟ । ସେଥିରୁ ବାଣ୍ଟିକରି ଜଣା ହେଲେ ତା' ମନରେ ଯେଉଁ ଆଘାତ ଲାଗେ, କୋହ ଉଠେ, ତାହା ତୁମେ ବୁଝିବ କୁଆଡ଼ୁ ?

ରାଜୁ : ତା' ହେଲେ ତୁମେ ମୋଠୁଁ କ'ଣ ସେଇସବୁ ଆଶା କରିଥିଲ ?

ଗୀତା : ହଁ ରାଜୁ ଭାଇ ! ସେଇ ଟିକିଏ ସ୍ନେହ ପାଇଁ ମୁଁ ତୁମ ପଛେ ପଛେ ଘୁରି ଘର ଗୋଡ଼େଇ ଆସିଥିଲି ! College hostel ଛାଡ଼ି ଅନ୍ୟ ବସା ନେଇ ତୁମ ପାଖକୁ ଦୌଡ଼ି ଆସିଥିଲି ।

ରାଜୁ : ଏ ଭୁଲ ତୁମେ କାହିଁକି କଲ ଗୀତା ? ନା, ନା, ଏ ଭୁଲ ପାଇଁ ତୁମେ ଅନୁତାପ କରିବା ଦରକାର ।

ଗୀତା : ଅନୁତାପ ? କାହିଁକି ?? ମୁଁ କ'ଣ ଜୁନଆରୁ ବାହାରେ ? ମୁଁ କ'ଣ ଫୁଲ ନୁହେ ? ମୋର କ'ଣ ସୁରଭି ନାହିଁ ? ଭଅଁର କ'ଣ ମୋ ନିକଟକୁ ଉଡ଼ିଆସିବାକୁ ମନା ହୋଇଛୁ ? ତେବେ ମୁଁ କାହିଁକି ଅନୁତାପ କରିବ ?

ରାଜୁ : ତୁମେ ଯେଉଁ ଭ୍ରମରର ଆଶାରେ ଦୌଡ଼ି ଆସିଥିଲ, ମୁଁ କିନ୍ତୁ ସେ ଭ୍ରମର ନୁହେ । ତା' ଛଡ଼ା ଫୁଲତ ଭ୍ରମର ନିକଟକୁ ଯାଏନା ।

ଗୀତା : ତା' ହେଲେ ମୋର ସବୁ ଚେଷ୍ଟା କ'ଣ ବୃଥା ହୋଇଯିବ ? ମୋର ଅସରନ୍ତି ଆଶା ସୌଧ କ୍ଷଣିକରେ କ'ଣ ମାଟିରେ ମିଶିଯିବ ?

ରାଜୁ : ବିବେକ ଶୂନ୍ୟା ହୋଇ ତୁମେ ଆକାଶ କୁସୁମ ତୋଳିବା ପାଇଁ କାମନା କରୁଥିଲ କାହିଁକି ? ମୁଁ କହି ରଖୁଛି ଗୀତା, ଏପରି ଭୁଲ ଆଉ କେବେ କରିବନି ।

ଗୀତା : ନା' ରାଜୁଭାଇ, ତୁମେ ମତେ ଏମିତି ଦୂରେଇ ଦିଅନା । ତୁମର ଟିକିଏ ସାନିଧ୍ୟ ପାଇଁ କେତେ ରାତି ମୁଁ ବିନିଦ୍ର କଟାଇ ଦେଇଛି । ମୁଁ ଯେତେ ଯେତେ ପାଖକୁ ଆସିବାକୁ ଚେଷ୍ଟାକଲେ ମଧ୍ୟ ତୁମେ...

ରାଜୁ : ଗୀତା, ମତେ ଭୁଲ ବୁଝନା ଗୀତା । ମତେ ବୁଝିବାକୁ ଚେଷ୍ଟାକର । ମୁଁ......

ଗୀତା : କୁହ ରାଜୁଭାଇ ! ଅଟକି ଗଲ କାହିଁକି ?

ରାଜୁ : ଶୁଣ ଗୀତା, ମନେଥିବ ତୁମର ସେ ପିଲାଦିନର ଧୂଳି ଖେଳ ବେଳର ସାଙ୍ଗ ମାଧ୍ୱୀକଥା । ସେଇ ସରଳା ପଲ୍ଲୀ ବାଳିକାଟି ତା' ସ୍ନେହ ଓ ଆନ୍ତରିକତା ବଳରେ ମୋ ମନଟାକୁ କିଣି ନେଇ ପାରିଛି । ତା' ଭଲ ପାଇବାକୁ ଅସ୍ୱୀକାର କରି ମୁଁ ତୁମକୁ କେବେ ଗ୍ରହଣ କରି ପାରିବିନି ।

ଗୀତା : ନା, ନା, ଏସବୁ ତୁମର ମନଗଢ଼ା କଥା ।

ରାଜୁ : ମନଗଢ଼ା କଥା ନୁହେ ଗୀତା । ଗାଁର ସେଇ ନଈ କୂଳରେ ବିବାହ କାର୍ଯ୍ୟମଧ୍ୟ ସରିଯାଇଛି ।

ଗୀତା : ବନ୍ଦକର ରାଜୁଭାଇ, ବନ୍ଦକର ! ତୁମକୁ ଚିହ୍ନିବାରେ ମୋର ଡେ଼ରି ହୋଇଗଲା । ଯଦି ତୁମର ମନରେ ଏଭଳି ଧାରଣା ଥିଲା, ତେବେ ମତେ ତୁମ ନିକଟକୁ ଆକୃଷ୍ଟ କରିବାରେ ପ୍ରଶ୍ରୟ ଦେଉଥିଲ କାହିଁକି ?

ରାଜୁ : ଗୀତା ! ଏ ସବୁ ପୂର୍ବମାୟାରେ ଉଚ୍ଛୃଙ୍ଖଳତା ।

ଗୀତା : ପିଲାଟି ଦିନରୁ ଅତି ଆପଣାର ମନେକରି ସବୁ ନିନ୍ଦା, ଅପବାଦକୁ ତୁମପାଇଁ ସହିବାକୁ ମୁଁ ପ୍ରସ୍ତୁତ ଥିଲି । କାହାରି କଥାକୁ ଭ୍ରୂକ୍ଷେପ ନକରି ତୁମ ପାଖକୁ କେତେ ଆଶା ନେଇ ଦୌଡ଼ି ଆସିଥିଲି, ଶେଷରେ କ'ଣ ଏଇ ଭଙ୍ଗାମନ ନେଇ ଫେରିବାକୁ ।

ରାଜୁ : ଏମିତି ଭଙ୍ଗା ମନକୁ ଯୋଡ଼ିବା ପାଇଁ ହୁଏତ କୌଣସିର ଅଭାବ ହେବନି କିନ୍ତୁ ମୁଁ ଏଥିପାଇଁ କୌଣସିମତେ ଦାୟୀ ନୁହେଁ ?

ଗୀତା : ହଁ, ହଁ ତୁମେ ଦାୟୀ । ଜାଣି ଶୁଣି ତୁମେ ମୋ ଜୀବନଟାକୁ ଛାରଖାର କରିଦେଲ । କୁହ ରାଜୁଭାଇ, ମୁଁ କେମିତି ତୁମ ବିନା

ବଞ୍ଚିବି ? ମୁଁ ତୁମକୁ ଚାହେଁ ରାଜୁଭାଇ । ମୁଁ ତୁମକୁ ହିଁ ଚାହେଁ ଜୀବନର ସାଥୀରୂପେ...

ରାଜୁ : ନା' ଗୀତା ! ଏହା ଅସମ୍ଭବ ।

ଗୀତା : ରାଜୁଭାଇ ! ଥରେ ମତେ ତୁମ ବକ୍ଷରେ ସ୍ଥାନ ଦେଇ ଦେଖ, ମୁଁ ସୁରଭିତ କି ନୁହେଁ । ତୁମର ପରଶରେ ମୋ ଜୀବନ ସାର୍ଥକ ହେଉ ।

ରାଜୁ : ଗୀତା !!

ଗୀତା : ମୋ ଦେହର ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗରେ ତୁମର ସ୍ପର୍ଶ, ତୁମର ଗନ୍ଧ ଭରିଦିଅ ରାଜୁଭାଇ । ମୁଁ ହେବି... (ପାଖକୁ ଲାଗି ଆସିଲା)

ରାଜୁ : (ଠେଲିଦେଇ) ଗୀତା ! ଯାଅ ତୁମେ ଏଠୁ ଚାଲିଯାଅ । ତୁମ ପରି ସ୍ତ୍ରୀ ଏ ସମାଜରେ କଳଙ୍କ । ଆଉ କେବେ ଜୀବନରେ ଏ ଘରେ ପାଦ ଦେବାକୁ ଚେଷ୍ଟା ନ କର ଯେମିତି ।

ଗୀତା : ବେଶ୍ ! କିନ୍ତୁ ମନେରଖ ରାଜୁଭାଇ ! ଯେଉଁ ଫୁଲ୍ ତା'ର ମହକରେ ପ୍ରମତ୍ତ ହୋଇ ଭଅଁରର ସାନିଧ୍ୟ ଆଶାକରେ, ସେଇଫୁଲ୍ ପୁଣି ପ୍ରେମିକ ଭଅଁରକୁ ନିଜ ହୃଦୟରେ ରାତି ଯାପନ ପାଇଁ ଆଶ୍ରୟ ଦେଇ ମଧ୍ୟ ମାରି ଦେଇ ପାରେ...

(ଗୀତା ରାଗରେ ଚାଲିଗଲା । ରାଜୁ ସ୍ଥାଣୁ ଭଳି ଠିଆ ହୋଇ ରହିଛି)

—ଅଂଧାର—

## ପ୍ରଥମ ଦୃଶ୍ୟ

[ନଈକୂଳ—ଅସ୍ତଗାମୀ ସୂର୍ଯ୍ୟଙ୍କର ସ୍ୱର୍ଣ୍ଣାଭ କିରଣ ଚତୁର୍ଦ୍ଦିଗରେ ବିଚ୍ଛୁରିତ । ପକ୍ଷୀମାନଙ୍କର କୋଲାହଳ ପରିବେଶକୁ ଅଧିକ ମନୋରମ କରି ତୋଳିଥିଲା । ନିକଟସ୍ଥ ଗଛ ମୂଳ ଏକ ପଥର ଉପରେ ଏକାକୀ ବସିଥିଲା ମାୟା । ହଠାତ୍ ଆନନ୍ଦ, ପରିବେଶ ମଧ୍ୟରେ ଗାଇ ଉଠିଲା ଗୀତଟିଏ]

ମାୟା : ଏ ନିଦୁଆ ଆକାଶ ମଉଳା ଜହ୍ନକୁ
କୋଳ କଲ ଯେବେ ନଈ,
ମୋ ସପନ ରାଇଜ ସଉଦାଗରକୁ
ନେଲା କେ ମନକୁ ଭୁଲାଇ ॥ ୧ ॥

ରଜୁ : (ଗାଇ ଗାଇ ପଶି ଆସିଛୁ)
ଏ ଶୀତୁଆ ସକାଳ ସଜଫୁଟା ଟଗ

ପ୍ରଥମେ ଛୁଇଁଲ ଭୁଇଁ,
ମୋ ସପନ ରଙ୍ଗିଲା ମାନସୀ ମୂଟରେ
ପ୍ରତିମା ଗଲ ଉଭେଇ । ॥ ୧ ॥

ମାଧୁ : ଏ ଆକାଶ ଆଜି ହସଉଛି ତାର
ଉଚ୍ଛୁଳା ଢେଉରେ ଘର,
ରଜୁ : ସଜ ଫୁଟା ଝର ସକାଳ କାକରେ
ଦେଖେ ପ୍ରତିବିମ୍ବ ତାର । ॥ ୨ ॥
ମାଧୁ : ଆକାଶରେ ଚନ୍ଦ୍ର ହଜିଗଲେ ତାରେ
ଆକାଶକ ଭୁଲି ପାରେ,
ରଜୁ : କାକର ମିଶାଇ ସଜୁଆ ଝରରେ
ମିଳନର ମଧୁ ଝରେ । ॥ ୩ ॥

[ଶେଷରେ କୋଳେଇ ନେଇଛୁ ମାଧୁକୁ । ଦୁହେଁ ବସିଗଲେ ସେଇଠି । ଆକାଶକୁ ଚାହିଁ ରହିଥାଏ ମାଧୁ ରଜୁର କୋଳରେ ଶୋଇ ରହି । ]

ମାଧୁ : ଏଇ ଦେଖତ ରଜୁଭାଇ ! ଆକାଶରେ କେମିତ ଦୁଇଟି ପକ୍ଷୀ ଉଡ଼ି ଯାଉଛନ୍ତି...ଆଉ ଆମେ...

ରଜୁ : ଆମେ ଉଡ଼ିଯିବା ସେଇ ଦେଶକୁ, ଯୋଉଠି ନଥିବ ବାଧା ଆଉ ବନ୍ଧନ । (ଚୁମା ଦେବାପାଇଁ ଚେଷ୍ଟା କରୁଛି)

ମାଧୁ : ଯା' ଭାରି ଦୁଷ୍ଟ ତୁମେ ।

ରଜୁ : ଖାଲି ମୁଁ କାହିଁକି । ଏମିତ ଶୀତୁଆ ସନ୍ଧ୍ୟାରେ, ଆଉ ଏଇ ପ୍ରକୃତିର ପରିବେଶ ମଝିରେ ଯେ କୌଣସି ଲୋକ ଦୁଷ୍ଟ ହୋଇଯିବା ସ୍ୱାଭାବିକ ।

ମାଧୁ : ଭଅଁର ପରି ଫୁଲରୁ ମଧୁ ଶୋଷି ନେଇ ପରେ ଫୁଲର ସୁଗନ୍ଧକୁ ଭୁଲିଯାଆନ୍ତି ଯେଉଁ ପୁରୁଷ ଜାତି, ମୁଁ ସେମାନଙ୍କୁ ଘୃଣା କରେ ।

ରାଜୁ : ତା' ହେଲେ ମୁଁ କ'ଣ ସେଇ ଭ୍ରମର ମାଷ୍ଟ୍ର ।

ମାଷ୍ଟ୍ର : ନୁହେଁତ ଆଉ କ'ଣ ? ମତେ କହିଥିଲନା ରାଜୁଭାଇ । ପ୍ରତି ସପ୍ତାହରେ ଚିଠି ଦେବ ବୋଲି ?

ରାଜୁ : କାହିଁକି ମୁଁ ତ ପ୍ରତି ସପ୍ତାହରେ ଚିଠି ଦେଇଛି ।

ମାଷ୍ଟ୍ର : ମୁଁ କିନ୍ତୁ ସବୁ ତିନୋଟି ଚିଠି ପାଇଛି ।

ରାଜୁ : ତା' ହେଲେ ଆଉ ସବୁ ଚିଠି ଗଲା କୁଆଡ଼େ ?

ମାଷ୍ଟ୍ର : ତା' କେବଳ ସେଇ ଭଗବାନଙ୍କୁ ଜଣା । ପୋଷ୍ଟ ପିଅନକୁ କେତେ ଅପେକ୍ଷା କରେ ମୁଁ । ସେ ଚାଲିଯିବା ପରେ ମୁଁ ନିରାଶ ହୋଇ ଫେରେ ।

ରାଜୁ : ସବୁ ଚିଠିର ଉତ୍ତର ମୁଁ ଦେଇଛି ମାଷ୍ଟ୍ର ! ହେଲେ ସେ ଚିଠି ଗୁଡ଼ାକ ଗଲା କୁଆଡ଼େ ?

["ଅସରା ଅସରା" ଗୀତ ଗାଇ ଗାଇ ପ୍ରବେଶ କରୁଥିଲା ମକୁନ୍ଦ । ମକୁନ୍ଦର ପାଟିଶୁଣି ରାଜୁ ଓ ମାଷ୍ଟ୍ର ପରସ୍ପର ଅଲଗା ହୋଇ ଠିଆ ହୋଇଗଲେ]

ମକୁନ୍ଦ : ମୁଁ ଜାଣେ ସବୁ, ସବୁ ବଡ଼ଘରର ପୁଅ ଏମିତି ହୋଇଥାନ୍ତି । ଛାଡ଼, ମୋର କେଉଁଣେ କେତେ ପାର୍ଟ ମୁଖସ୍ଥ କରିବାକୁ ଅଛି ।

(କହି କହି ଚାଲି ଯାଉଥିଲା)

ରାଜୁ : ଆରେ ମକୁ, ଏତେ ଦିନକେ ଦେଖା, କଥା ନାହିଁ ବାର୍ତ୍ତା ନାହିଁ । ଖାଲି ସବୁଦେଲେ ତୁମର ସେଇ ପାର୍ଟ ମୁଖସ୍ଥ... ।

ମକୁନ୍ଦ : ଛାଡ଼ ହୋ ମକୁକୁ ଏଥର ପଚ୍ଚରେ କିଏ ? ରାମଚନ୍ଦ୍ର ତ କେଉଁଣେ ସୀତା ନେଇ ଚମ୍ପଟ ଆଉ ଶିବପ୍ରସାଦକୁ ପଚ୍ଚରେ କିଏ ? କହିବଟି ବାବୁ, କଟକ ସହରରେ ମକୁ ତୁମର କେବେ ମନେ ପଡ଼ିଥିଲା ?

ରାଜୁ : ମନେ ପଡେ଼ କି ନାହିଁ ମୋ ସାଙ୍ଗ ଶରତ ସହ ଦେଖା ହେଲେ ପଚ୍ଚରିବ ? ମୁଁ ତମକଥା ତାକୁ କେତେ କହିଛି । ଥରେ ସେ କହିଲା 'ରାଜୁ ! ତମ ଗାଁକୁ ଯାଇ ମକୁ ଆଉ ନୂଆ ଭାଉଜକୁ ଥରେ ଦେଖି ଆସିଲେ ହୁଅନ୍ତା ନାହିଁ" ।

ମକୁନ୍ଦ : ପୁଣି ସେ ନୂଆ ଜନ୍ମୁଛି କଏ ? କାହିଁକି ତାଙ୍କୁ ପୋଷ୍ଟରେ ପଠାଇ ଦେଲେନି ?

ରାଜୁ : ମକୁନ୍ଦ ଖୁବ୍ ଥଟ୍ଟା କରି ଶିଖିଲେଣି ମାୟା ।

ମାୟା : ମକୁ ଭାଇଙ୍କୁ ସେ କଥା ପଚାରନ୍ତୁ ।

ମକୁନ୍ଦ : ଆରେ ତମେତ ରାଜୁ ବାବୁ, ମତେ 'ତୁ' ରୁ 'ତମେ' ଆସନକୁ ଟେକି ଦେଲ । "ତୋ କଥା ମନେପଡ଼େ ବଦଳରେ, ତମକଥା ମନେ ପଡ଼େ ହେଲା" । ଆଉ ତା' ପ୍ରତି ବଦଳରେ ମୁଁ ଥଟ୍ଟା କରିଦେଲି ପଦେ ଅଧେ । ...ମକୁ କ'ଣ ଥଟ୍ଟା ଶିଖିବ ରାଜୁ ବାବୁ ! ଯିଏ ଦୂତ ପାର୍ଟଠାରୁ ରାବଣ ପାର୍ଟ ପର୍ଯ୍ୟନ୍ତ ଶିଖିଆସିଲା ଆଉ ସେ କ'ଣ ବିଦୂଷକ ପାର୍ଟଟା ବାଦ ଦେଇ ଆସିଛି ବୋଲି ଭାବିଛ ?

ମାୟା : ମକୁ ଭାଇଙ୍କୁ କ'ଣ କଥାରେ ପାରିହେବ ରାଜୁ ଭାଇ ?

ମକୁନ୍ଦ : ଓହୋ, ତୁ ମଧ୍ୟ ରାଜୁ ବାବୁଙ୍କ ପଟ ଧରିଲୁଣିତ । ହଁ, ଧରିବା କଥା । ହେଲେ ଏଥର କଟକ ଗଲାବେଳେ ସେ ତୋତେ ସାଙ୍ଗରେ ନେଇ ଯାଆନ୍ତୁ । ନ ହେଲେ ତାଙ୍କ କାନଧରି କହିବୁ, ପ୍ରତି ସାତ ଦିନରେ ଥରେ ଲେଖାଏଁ ଚିଠି ଦେବେ ।

ରାଜୁ : ଯିବା ମକୁ ! ସମସ୍ତେ ଯିବା । ମାୟା ଯିବ ଆଉ ତୁମେ କଣ ଯିବନି ?

ମକୁନ୍ଦ : ନାହିଁ ବାବୁ, ମୁଁ ପାହୁଣ୍ଡେ ଗୋଡ କାଢ଼ି କୁଆଡ଼େ ଯାଇ ପାରିବନି । ମୁଁ ଚାଲିଗଲେ ମୋ ପାର୍ଟ ଏଠି କରିବ କଏ ?

ରାଜୁ : ଆଜି କ'ଣ ତୁମକୁ କଏ ଚାଲିଯିବାକୁ କହୁଛି ? ଆସନ୍ତା ବର୍ଷକୁ ମୁଁ ଚାକିରୀ କଲେ ଯିବା ।

ମକୁନ୍ଦ : ତୁମ ଇଚ୍ଛା ଯାହା କରୁଛ କର, ମୁଁ ଚାଲିଲି । ତେଣେ ଗୁଡ଼ାଏ ପାର୍ଟ ମୁଖସ୍ଥ କରିବାକୁ ହେବ । (କହୁ କହୁ ଚାଲି ଯାଉଛି)

ରାଜୁ : କି ସୁନ୍ଦର ଲୋକଟାଏ ଦେଖିଲ ମାୟା ! ଛନ୍ଦ ନାହିଁ, କପଟ ନାହିଁ, ଏକବାରେ ଖୋଲା ହୃଦୟ । ମତେ ଏମିତି ଲୋକଙ୍କୁ ଖୁବ୍ ଭଲଲାଗେ ।

ମାୟା : କିନ୍ତୁ ତାଙ୍କର ଗୋଟାଏ କଥା ରାଜୁ ଭାଇ । ସେ ଯାହା ବୁଝିଥିବେ ସେଇୟା । ଯଦି ଟିକିଏ ଭୁଲ ବୁଝିବେ ନା ତା' ହେଲେ ସଙ୍ଗେ ସଙ୍ଗେ

କୁରୁକ୍ଷେତ୍ର ଆରମ୍ଭ କରି ବସିବେ । ଆଚ୍ଛା ବାପାଙ୍କ ଦେହ କେମିତି ଅଛି କହିଲେ ?

ରାଜୁ : ବାପାଙ୍କ ଦେହର ଅବସ୍ଥା ସେତେ ଭଲ ନୁହେଁ ମାୟା । ବେଳେ ବେଳେ ତାଙ୍କ ଅବସ୍ଥା ଏମିତି ହୁଏ ଯେ ମତେ ଭାରି ଭୟ ଲାଗେ । କ'ଣ ହୋଇଯାଏ... ।

ମାୟା : ଛି, ରାଜୁଭାଇ ! ତୁମେ ଏମିତି ସାହସ ହରେଇଲେ ଚଳିବ ?

ରାଜୁ : ସବୁବେଳେ ସେ ବୃହାନ୍ତି ବୋହୂଟିଏ ଘରକୁ ଆଣିବାକୁ ! ହେଲେ ମୁଁ କିଛି ନ କହି ଚୁପ୍ ରହେ । ଏ ଅବସ୍ଥାରେ ଯଦି ସେ ଆମ ସମ୍ପର୍କ ଜାଣିପାରନ୍ତି ତେବେ ତାଙ୍କ ମନ ଏବଂ ଦେହର ଅବସ୍ଥା ହୁଏତ ଖରାପ ଆଡ଼କୁ ଗତି କରିବ ।

ମାୟା : ମୋ ଅବସ୍ଥା ମଧ୍ୟ ଠିକ୍ ସେଇଆ । ତୁମେ ଚାଲିଯିବା ପରେ ବାପା ମତେ ବହୁତ ବାଧ୍ୟ କରିଛନ୍ତି ମୋର ବାହାଘର ପାଇଁ । କିନ୍ତୁ ମୁଁ କିଛି ନ କହି ମନା କରେ । ଥରେ ମଳୁଭାଇ ବାପାଙ୍କୁ କହିଦେଲେ ମୋ ବାହାଘର ତୁମ ସହିତ ସରିଛି ବୋଲି ।

ରାଜୁ : ତା' ପରେ ?

ମାୟା : ଏ କଥାରେ ବାପା ବିଚଳିତ ହୋଇ ପଡ଼ିଲେ । ଅବଶ୍ୟ ମଳୁଭାଇ ସବୁ ବୁଝାଇ ଦେବା ପରେ ଅବସ୍ଥା... ।

ରାଜୁ : ସୁସ୍ଥୁର ଯାଇଛି ଓ ସୁସ୍ଥୁର ଯିବ ମଧ୍ୟ ।

(କହି କୋଳକୁ ଆଉଜାଇ ନେଇଛି)

—ଅନ୍ଧାର—

## ଦ୍ୱିତୀୟ ଦୃଶ୍ୟ

[ଗ୍ରାମପଥ—ସମୟ ସନ୍ଧ୍ୟା । ମୁକୁନ୍ଦ ଅଭିନୟ ଠାଣିରେ ଠିଆ ହୋଇ ରହିଛି । ଯୋଗୀ ମୁକୁନ୍ଦର ନିର୍ଦ୍ଦେଶନାରେ ଅପେରା ଦଳର ଗୌରୀ ଭୂମିକାରେ ଅଭିନୟ ଅଭ୍ୟାସ କରିବାରେ ଲାଗିଛି । ]

ଯୋଗୀ : ପ୍ରାଣେଶ୍ୱର ! ତୁମେହିଁ ମୋର ବସନ୍ତର କୋକିଳ । ତୁମେହିଁ ମୋର ଜୀବନର ସର୍ବସ୍ୱ । ତୁମ୍ଭବିନା ଗୌରୀର ଜୀବନରେ ଶାନ୍ତିନାହିଁ ପ୍ରାଣେଶ୍ୱର । ସଖିରେ ! ଶୟନେ, ସ୍ୱପନେ ମୋ ହୃଦୟର ଦେବତା ବାରମ୍ବାର ଆସି ମୋ ହୃଦୟକୁ ଜଳାଉଛନ୍ତି କାହିଁକି ? ମିଳନ କ'ଣ ଏ ଜୀବନରେ ସମ୍ଭବ ହେବନି ସଖୀ ?

(ଆଢୁଆଳରେ ରହି ଯୋଗୀର ଅଭିନୟ ଦେଖି ଦେଖି ଭୋଳ ହୋଇ ଯାଇଛି ମୁକୁନ୍ଦ)

ମୁକୁନ୍ଦ : "ଦୂରେ ଥିଲେ ପାଶେ ଥିଲାପରି ଥିବୁ ଯେନି
କେତେ ଦୂରେ ଚନ୍ଦ୍ର, କେତେଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର" ।

ଯୋଗୀ : ଆସିଗଲ ପ୍ରିୟତମ ମୋର ! କୋଳେ ତୁମ୍ଭ ଲୁଚାଇଣ ମଥା, ଲଭିବି ମୁଁ ସରଗ ସମ୍ପଦ ।

ମୁକୁନ୍ଦ : ତୁ ଛଟପଟ ହୋଇ ମରିବୁ, ବାପଧନ ! ତୋ ଦେଇ କିଛି ହୋଇ ପାରିବନି ।

ଯୋଗୀ : ହୋଇ ପାରିବନି ! କାହିଁକି ? ମୁଁ କ'ଣ ମଣିଷ ନୁହେଁ ?

ମୁକୁନ୍ଦ : ମଣିଷ ହେଲେ କ'ଣ ହେବ । ମଣିଷ ଭଳି ମଣିଷ ହେବାକୁ ହେଲେ ତୋର ଲିଙ୍ଗ ପରିବର୍ତ୍ତନ ହେବା ଦରକାର । କହେ' ମୁଁ ତୋତେ

କେତେଥର କହିଲଣି କେଦାରର ସ୍ୱର ଶୁଣି ଶୁଣି ଆଡ଼ ହୋଇ ଠିଆ ହେବୁ । ଚନ୍ଦ୍ରମା ବଦନକୁ ପଣତ କାନରେ ଢାଙ୍କି ଦେଇ କହିବୁ; "ପ୍ରିୟତମ... ।

ଯୋଗୀ : ତୁ ମତେ ଶିଖେଇ ଦେଉନୁ—ଖାଲି ସବୁବେଳେ ମୋ କଥାରେ ଗାଳି ଦେଉଥିବୁ ?

ମକୁନ୍ଦ : ହେଉ ହେଲା, ଆଉ ଏଥର ମୋତେ ଗାଳି ଦେବନି । ହଇରେ, ମାଡ଼ ନ ଖାଇଲେ, ଗାଳି ନ ଶୁଣିଲେ ନାଟ କ'ଣ ଶିଖି ହୁଏ ?

ଯୋଗୀ : ନାହିଁ ମକୁନ୍ଦାଇ ! ତତେ ଦେଖିଲେ ମତେ ଭାରି ଡର ଲାଗେ । ମୁଁ ତୋର ଗୋଡ଼ ଧରୁଛି ମକୁନ୍ଦାଇ, ମତେ ତ ଏତେ ଏଡ଼େ ଆଖି କରି ଅନାନା ।

ମକୁନ୍ଦ : ହଁବେ, ମୁଁ ତତେ ଗୋଟାପଣେ ଖାଇ ଯାଉଛି ।

ଯୋଗୀ : (ଡ଼ରଯାଇ, ଦୂରକୁ ଦେଖି) ମକୁନ୍ଦାଇ ଦେଖିଲୁ କିଏ ସେଇ ବାଟ ଦେଇ ଯାଉଛି ?

ମକୁନ୍ଦ : ସେଥିରେ ତୋର କ'ଣ ଗଲା ? ଚକୁଳି ଖାଇବା ଲୋକର ବିନ୍ଧ ଗଣିବା ଦରକାର କ'ଣ ? ଯିବୁ ଯଦି ନା' ହେଲେ ତୁ ଯୋଉ କିଶୋର ବାବୁଙ୍କର ପିଛା ଧରିଛୁ ତୋ କଥା ମୁଁ ଦିନେ ବୁଝିବି ।

ଯୋଗୀ : ମକୁନ୍ଦାଇ ! ଫେରନ୍ତା ତୁ ମତେ ଏଡ଼େ ଏଡ଼େ ଆଖି କରି ଅନେଇଲୁ...

ମକୁନ୍ଦ : ନା' ଆଉ ଆଖି ବୁଜି ବସିନ । ମୁଁ ଆଖିବୁଜି ବସିଲେ ତମଭଳି କେତେଟା ମାଈ ପୁରୁଷ ଏଇ ଗାଁରେ କଳାକନା ବୁଲେଇ ଦେବେ ।

(ବାହାରୁ କିଶୋରର ସ୍ୱର ଶୁଣାଗଲା)

କିଶୋର : ଯୋଗୀ ! ଏ ଯୋଗୀ !!

ଯୋଗୀ : ଏଇ ଆସିଲି ଆଜ୍ଞା । ଗୁରୁଦେବ ଗଲି । (କହି କହି ଚାଲିଗଲା)

ମକୁନ୍ଦ : ଏ ଯୋଗୀ ! ହଇରେ ପୁଅ ତୁ ଡ଼ାଳେ ଡ଼ାଳେ ଗଲେ ମୁଁ ପତ୍ରେ ପତ୍ରେ ଯିବା ଲୋକ । ସାପକୁ ଖେଳେଇ ଖେଳେଇ କିପରି ପେଡ଼ିରେ ଜବତ କରି ରଖଯାଏ ସେ କଥା ମତେ ବେଶ୍ ଜଣା ।

[କହି କହି ଚାଲିଗଲେ । ବିପରୀତ ଦିଗରୁ ପରେ ପରେ ପ୍ରବେଶ କଲେ କିଶୋର । ମାତାଲ ଅବସ୍ଥାରେ । (କିଛି ପ୍ରତ୍ୟହ ନିଶା ସେବନରେ ଦ୍ବିତୀୟ ଶ୍ରେଣୀ ମଦ୍ୟପୀଙ୍କ ଭଳି ଅଭିନୟ ଅନାବଶ୍ୟକ) ସାଥିରେ ଯୋଗୀ]

କିଶୋର : ବୁଝିଲୁ ଯୋଗୀ ! ମଜା ସେଇଠି । ବୋତଲ ପରେ ବୋତଲ ଖାଲି କରିଦେଲେ ଯାଇ ମଜା ।

ଯୋଗୀ : ବୁଝିଲେ ବାବୁ ! ମାସ୍ଟ୍ରା ଖାଲି ରାଜି ହୋଇ ଯାଆନ୍ତାକି ମଜାଟା ଯାଇ ସପତମରେ ଉଠନ୍ତା ।

କିଶୋର : ହେଟ୍-ମାସ୍ଟ୍ରା, ସେ କିଏ ? କାହିଁକି ମୁଁ ତାକୁ ଅପେକ୍ଷା କରିବ ?

ଯୋଗୀ : ମୁଁ ତ ଅପେକ୍ଷା କରିଚ ବାବୁ । ତା' ବାପା ତାକୁ ବହୁତ ବୁଝେଇଲା ମତେ ବାହା ହେବାପାଇଁ । ହେଲେ ସେ ଟୋକାଡ ମୋଟେ ରାଜି ହେଲାନି... ।

କିଶୋର : ରାଜିବା ହେବ କାହିଁକି ଯୋଗୀ । ରାଜି ହେଲେ ଚିଠି ପରେ ଚିଠି ଆଉ ରାଜୁ ପାଖକୁ ପଠେଇବ କିଏ ?

ଯୋଗୀ : ଠିକ୍ କଥା ବାବୁ । ମାସ୍ଟ୍ରା ବାହା ହୋଇଗଲେ ଆଉ ଚିଠି ପତ୍ର କାରବାର ହେବ କେମିତ ?

କିଶୋର : ପୋଷ୍ଟ ମ୍ୟାନ ପାଖକୁ ଯାଇଥିଲୁ ? କ'ଣ କହିଲା ?

ଯୋଗୀ : କହିଲା-"ଆଜିତ ଚିଠି ଆସିନି" ।

କିଶୋର : ଆସିନି ? ନା, ନା, ନିଶ୍ଚୟ ଆସିଥିବ । ଯଦି ଚିଠି ନ ଆସିଛି ତେବେ ରାଜୁ ନିଶ୍ଚୟ ଆସିଥିବ ।

ଯୋଗୀ : ହଁ, ହଁ ଆଜ୍ଞା, ମନେ ପଡ଼ିଲା ! ରାଜୁବାବୁ ନା' କିଏତ... ।

କିଶୋର : କ'ଣ ହେଲା ? -

ଯୋଗୀ : ମାସ୍ଟ୍ରା ଆଉ ରାଜୁବାବୁଙ୍କ ଭଳି ଜଣେ କିଏ ନଈ କୂଳରେ...

କିଶୋର : ତୁମେ ଠିକ୍ ଠଉରେଇ ନେଇଛ young man, "Good wine needs no push" । ମାନେ, ଟଙ୍କା ବ୍ରାହ୍ମଣରେ ପଇତା ଦରକାର ନାହିଁ ।

ଯୋଗୀ : ଆଜ୍ଞା, ଆଜି ଆଉ କ'ଣ ଆସିବ ? (ଶ୍ରୁବ ବୋତଲର ଆଣିବାର ଇଶାରା ଦେଇ । )

କିଶୋର : Why not ? ତଳେ ଆଣିବାକୁ ହେବ । ଭ୍ରାନ୍ତ ମନକୁ ଶାନ୍ତି ଦେବାକୁ ମୋର ଦରକାର ମଦ । ପ୍ରଚୁର ମଦ । ମୁଁ ସବୁ କିଛି ଭୁଲି ଯିବାକୁ ଚାହେଁ ।

ଯୋଗୀ : ତା' ହେଲେ ମୁଁ ଯାଉଛି ଆଜ୍ଞା, ନେଇ ଆସିବି ।

କିଶୋର : Yes, ଯାଇ ନେଇ ଆ ।

ଯୋଗୀ : (ଯାଉ ଯାଉ ଫେରି) ଆଜି ପଇସା ପତ୍ର କିଛି ନଥିଲା ଆଜ୍ଞା ।

କିଶୋର : ସେଥିପାଇଁ ତୁ କିଛି ଚିନ୍ତା କରନା ଯୋଗୀ । ଯେତେ ବେଳେ ଯାହା ଚାହିଁବୁ ନେବୁ । ଆଚ୍ଛା ତୁ ନେଇଆ ।

(ପକେଟରୁ ଟଙ୍କା ଦେଲେ । ଯୋଗୀ ଚାଲିଗଲା)

ମାମୁଁ, ଯେତେ ଜିଦ୍ ଧରିଲେ ମଧ୍ୟ ତୁମେ ମାମୁଁ ହୋଇ ଯିବାକୁ ଚାହଁ । ହେଲେ ମୁଁ ତୁମ ଜୀବନକୁ ତିଳ ତିଳ କରି ଉପଭୋଗ କରିବାକୁ ଚାହେଁ, ନଚେତ...

ରାଜୁ : (ପ୍ରବେଶି) ଆରେ କିଶୋର ଯେ, ତୁ ଏଠି ? ଆଜିକି ଦୁଇଦିନ ହେଲା ଗାଁକୁ ଆସିଲିଣି ଅଥଚ ବାବୁଙ୍କର ଦେଖା ନାହିଁ ।

କିଶୋର : (ଚାହିଁଲା କରି) ଓଃ... ସୂର୍ଯ୍ୟୋଦୟରେ ଭୋର ବିନା ସୂର୍ଯ୍ୟ ଦେଖିବା ମୂର୍ଖିଲ କିନ୍ତୁ ସୂର୍ଯ୍ୟାସ୍ତରେ ତ ନିଶ୍ଚୟ ଦେଖି ପାରୁଥିବୁ ।

ରାଜୁ : ମାନେ ?

କିଶୋର : ନଈ କୂଳରେ ମାମୁଁ ସହିତ ସାଥି ଭ୍ରମଣ ଆରମ୍ଭ କରିନୁ ବୋଧହୁଏ ?

ରାଜୁ : ସବୁ କଥାରେ ଗୋଟାଏ ସୀମା ଥାଏ କିଶୋର । ବନ୍ଧୁତ୍ୱର ସମ୍ପର୍କ ଏତେ ଛୋଟ ନୁହେଁ ଯେ...

କିଶୋର : ଆଉ ସେ ସୀମା ଅତିକ୍ରମ କଲେ ?

ରାଜୁ : ଫଳାଫଳ କିଛି ଭଲ ହେବନି ।

କିଶୋର : ତୁ ଜାଣୁ ରଜନୁ ! କିଶୋର ତା' ଜୀବନରେ ନିଜକୁ ଛାଡ଼ି ଦେଲେ ଅନ୍ୟ କାହାକୁ ଭୟ କରେନ ।

ରଜନୁ : ତୁ ମଦ ଖାଇଛୁ କିଶୋର ?

କିଶୋର : ହଁ, କିନ୍ତୁ ମତେ ମଦ ଖାଇବାକୁ କିଏ ବାଧ୍ୟକଲା ? ଶୁଣ, ମୋ ହୃଦୟକୁ କେହି ବୁଝିଲେନି । ମାୟା ଆଉ ଗୀତା ମତେ ପ୍ରଥମ ଦେଖିଲେଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ କେବଳ ଅପମାନ ଦେଇ ଆସିଛନ୍ତି । ସେ ସବୁ ଭୁଲି ଯିବା ପାଇଁ ମୁଁ ଏ ରଙ୍ଗୀନ ନିଶାର ଆଶ୍ରୟ ନେଇଛି ।

ରଜନୁ : ତୁ ଏତେ ଶ୍ରେଷ୍ଟ ହୋଇ ପାରିଲୁ କିଶୋର !

କିଶୋର : ତୁ ବୁଝି ପାରିବୁନି ବନ୍ଧୁ ଉପେକ୍ଷାର ଯନ୍ତ୍ରଣା । ଅନୁଭବ କରି-ପାରିବୁନି ସେ ଜ୍ୱାଳା । ମାୟା ମୋ ସ୍ତ୍ରୀ ହେବାକୁ ରାଜି ନୁହେଁ । ଗୀତା ମୋ ଜୀବନ ସାଥୀ ହେବାକୁ ଘୃଣା କରେ । ସେମାନେ ସମସ୍ତେ ମତେ ପାଦରେ ଠେଲି ଦେଲେ । ହେଲେ ସେ ଯୁଗରେତ ପୁଣି ଦେବତାମାନେ ସୋମରସର ବ୍ୟବହାର କରୁଥିଲେ । ଖାଲି ନାମର ପ୍ରଭେଦ ମାତ୍ର । ହେଲେ ଏ ଯୁଗର ମଦ my good friend । ମତେ ସ୍ୱର୍ଗସୁଖ ଦିଏ ।

ରଜନୁ : କିନ୍ତୁ ସେ ସୁଖ ଚିରସ୍ଥାୟୀ ନୁହେଁ ।

କିଶୋର : May not be, ହୋଇ ନ ପାରେ । କିଛି ସମୟ ପାଇଁ ତ ଜୀବନଟାକୁ ଉପଭୋଗ କରିହେବ । ଆଚ୍ଛା ଶୁଣ, ଆଉ ସବୁ ଖବର କ'ଣ ? ବାପାଙ୍କର ଦେହ କେମିତି ଅଛି ?

ରଜନୁ : ବାପାଙ୍କ ଦେହ ଭଲ ହୋଇ ଆସିଲାଣି । ଭାବୁଛି ଏବେ ଦୁଇଦିନ ପରେ କଟକ ଚାଲିଯିବି । ଯାଉଛି କିଶୋର ! ବାପା ତେଣେ ଅପେକ୍ଷା କରିଥିବେ । (ଚାଲିଗଲେ)

କିଶୋର : (ରାଜୁର ଯିବା ବାଟକୁ ଚାହିଁ) God may bless you Raju, God may bless you ! ହେଲେ, କିଶୋର କ'ଣ ଶେଷରେ ହାରିଯିବ ? No ! Never... ! (ସଜୋରରେ ହସିବାକୁ ଲାଗିଲା)

—ଅନ୍ଧାର—

## ତୃତୀୟ ଦୃଶ୍ୟ

[ ଦୃଶ୍ୟ---ଦୀନବନ୍ଧୁ ମହାନ୍ତି ଅସୁସ୍ଥତା ଯୋଗୁଁ ଖଟିଆରେ ଶୋଇଛନ୍ତି । ସପନ ସେବାରେ ଲାଗିଛି । ନିକଟରେ ଏକ ମେଜ ଉପରେ ଔଷଧପତ୍ର ଅଛି ଏବଂ ପାଖରେ ଏକ ଚୌକି । ]

ସପନ : (ଔଷଧ ଗ୍ଲାସ ଦେଇ ଦେଇ) ପିଇଦିଅ ବାବୁ ।

ଦୀନବନ୍ଧୁ : ପିଇବି ସପନ, ପିଇବି । ହେଲେ ଆଉ ଏମିତି କେତେ ଦିନ ଔଷଧ ଖାଇ ବଞ୍ଚିବି କହିଲୁ ? ତୋ ମା' ଚାଲିଯାଇ ମତେ ଏ ସଂସାର ଭିତରେ କାହିଁକି ଛାଡ଼ିଦେଲେ କେଜାଣି... ।

ସପନ : ଛି, ବାବୁ । ଏମିତି କହନ୍ତି ? ଦେଖୁ ନାହାନ୍ତି, ଦେହ ସବୁ ଭଲ ହୋଇ ଆସିଲଣି । ଡ଼ାକ୍ତର ବାବୁ କହୁଥିଲେ, ବିଶ୍ରାମ ଦରକାର । ଆପଣ ଏମିତି ଭାଙ୍ଗି ପଡ଼ିଲେ ଚଳିବ ?

ଦୀନବନ୍ଧୁ : ଭାଙ୍ଗି ପଡ଼ିବିନି ସପନ ? ମୋର ହୋଇ ଆଉ କିଏ ଅଛି କହିଲୁ । ଏକା ସେଇ ରାଜୁ । ତା' ପାଇଁ ମୁଁ ବଞ୍ଚିବା କଥା । ପିଲାଟି ଦିନୁ ମା'କୁ ହରାଇ କେତେ ଗେଲରେ ସେ ବଢ଼ି ଆସି ନ ଥିଲା !

ସପନ : ସବୁବେଳେ କ'ଣ ସବୁକଥା ସମାନ ଥାଏ ବାବୁ ! ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ଆସେ ।

ଦୀନବନ୍ଧୁ : ଦୁଃଖ ପରେ ସୁଖ ଆସେ ସପନ ! ହେଲେ ମୁଁ ସେ ସୁଖ ଦେଖିବା ପାଇଁ ଏଠି ନଥିବି । ଭୁଲି ଯିବୁନି ସପନ, ତୁ ରାଜୁକୁ ଭୁଲି ଯିବୁନି ।

ସପନ : ବାବୁ ! ସପନକୁ ଏ ଯାଏଁ ଚିହ୍ନି ପାରିଲନି ବାବୁ ? କ'ଣ ନ କରିଛି ସିଏ । ପିଲାଟି ଦିନରୁ ମୁଁ ଏଘରେ ଦୁଃଖ ସୁଖ ସାଙ୍ଗ ଚାଲି ଆସିଛି । ମୋର ଆଖି ଆଗରେ ବାପା ଗଲେ ତା' ପରେ ମାଆ, ତା' ପରେ.. ନା, ନା, ବାବୁ ! ଏଘରର ପ୍ରତି ଧୂଳି କଣାରେ ସପନର ହାତ ବାଜିଛି । ଶେଷରେ ଏଘରର ଧୂଳି କଣାରେ ସେ ବି ମିଶିଯିବ ।

ଦୀନବନ୍ଧୁ : ମୋର ଅବଶୋଷ ରହିଗଲା ସପନ, ରାଜୁର ବିବାହ ହୋଇଯାଇ-ଥିଲେ, ସେତିକି ଦେଖି ମୁଁ ସୁଖରେ ମରିଥାନ୍ତି ।

ସପନ : ତମେ ବଞ୍ଚିଥାଅ ବାବୁ । ଆଉ ଦୁଇଟା ବର୍ଷ ପରେ ରାଜୁ ବାବୁଙ୍କର ପଢ଼ା ସରିଯିବ । ତା ପରେ... ।

ଦୀନବନ୍ଧୁ : କୁଆଡ଼େ ଗଲା ସିଏ ? ଖିଆ ନାହିଁ ପିଆ ନାହିଁ । ଖାଲି ଖରାରେ ବୁଲି ବୁଲି ଦେହଟାକୁ କଳା କାଠ କରି ଦେଲାଣି ।

ସପନ : ତମେ ବିଶ୍ରାମ ନିଅ ବାବୁ । ତାଙ୍କ କଥା ମୁଁ ବୁଝିବି । କେଇଟା ଦିନ ପାଇଁ ଗାଁ କୁ ଆସିଛନ୍ତି ଯେତେବେଳେ ସାଙ୍ଗ, ସାଥି...।

(ପ୍ରବେଶ କରିଛି ରାଜୁ । ବାପାଙ୍କ ପାଖରେ ବସି ସପନକୁ ପଚାରିଛି)

ରାଜୁ : ବାପାଙ୍କ ଦେହ କେମିତି ଅଛି, ସପନ ?

ସପନ : ଭଲ ଅଛି ବାବୁ । ତମ ପରୀକ୍ଷା ପରା ନିକଟେଇ ଆସିଲାଣି । କେବେ ଆଉ ଯିବ ? ବଡ଼ ବାବୁଙ୍କ କଥା ମୋଟେ ଚିନ୍ତା କରନି । ମୁଁ ଅଛି ଯେତେବେଳେ କିଛି ଅସୁବିଧା ହେବନି ।

ରାଜୁ : ମୁଁ ଆସନ୍ତା କାଲି ଯିବି ବାପା । ସପନ ଥାଉ । ତୁମ ଦେହ ଭଲ ହୋଇଗଲେ ସେ ବରଂ ଆସିବ ।

ଦୀନବନ୍ଧୁ : ତୋର ଯାହା ଇଚ୍ଛା ବାପ, ଦେହର ଯତ୍ନ ନେବୁ । ସହର ଯାଗା । ଆଜିକାଲି ଅବସ୍ଥା ଯାହା ହେଲଣି'ନା ଦେଖି ବୁଝି ଚଳିବା ଭଲ । ପିଲାଏ ତ ଆଉ ପାଠ ପଢ଼ିବାକୁ ସହରକୁ ଯାଉ ନାହାନ୍ତି ଗୁଣ୍ଡାଗିରି କରି କରି ଶେଷରେ... ।

ସପନ : ତମେ ବିଶ୍ରାମ ନିଅ ବାବୁ । ଡ଼ାକ୍ତର ପରା ମନା କରିଥିଲେ ବେଶି କଥାବାର୍ତ୍ତା କରିବାକୁ । ବେଳ ଆସି କେତେ ହେଲଣି । ଆସ ବାବୁ, ଖାଇବ ଆସ ।

(ସପନ ଚାଲି ଗଲା)

ଦୀନବନ୍ଧୁ : ଯା' ବାପ, ଖାଇବୁ ଯା' ।

(ରଜୁ ଚାଲିଗଲେ । ଦୀନବନ୍ଧୁ ବିଶ୍ରାମ ନେଲେ)

—ଅଂଧାର—

## ଚତୁର୍ଥ ଦୃଶ୍ୟ

[ଅଳିଂଦ—କିଶୋର ଯୋଗୀର କାମିଜ ଧରି ତାର କାମ ହାସଲ କରିବାକୁ ବାଧ କରୁଛି । ମାତ୍ର ଯୋଗୀ ଅସମ୍ମତ ହେଉଥାଏ । ]

ଯୋଗୀ : ନା' ଆଜ୍ଞା ମୁଁ ପାରିବିନି । ମକୁନ୍ଦ ଯୋଉ ଲୋକ ନା' ମତେ ଠିଆରେ ଖାଇଯିବ ।

କିଶୋର : ମୂର୍ଖ ପାରିବୁନି । ଏତିକି କାମ କରି ପାରିବୁନି ? ମକୁନ୍ଦ ପୋଷ୍ଟ ବାକ୍ସରେ ଚିଠି ପକେଇ ଫେରିବା ସଗେ ସଗେ ତୁରିଆଡ଼କୁ ନଜର ଦେଇ ତାଲା ଭାଂଗିବୁ । ଆଉ ତିବାରେ ଥିବା ସବୁ ଚିଠି ନେଇ ମୋ ପାଖକୁ ଚାଲି ଆସିବୁ ।

ଯୋଗୀ : ନା, ବାବୁ ! ମୁଁ ମୋଟେ ପାରିବିନି । ମାୟା ପରି ମତେ ବାହା ନ ହେଉ... ।

କିଶୋର : କ'ଣ କହିଲୁ, ପାରିବୁନି ?

(ରାଗରେ ଗଳା ଧକ୍କା ଦେଇଛୁ । ଯୋଗୀ ତଳେ ପଡ଼ି ଯାଇଛି)

ଯୋଗୀ : (ଭୟରେ ଥର ଥର) ପାରିବି ଆଜ୍ଞା, ପାରିବି ।

କିଶୋର : ଅପମାନ ପରେ ଅପମାନ କେତେ ସହିଛି ମୁଁ ଜାଣୁ ? ତା'ର ପ୍ରତିଶୋଧ ମତେ ନେବାକୁ ହେବ ।

ଯୋଗୀ : (ହଠ୍ ହଠ୍) ପ୍ରତିଶୋଧ !!! ହେଲେ ମୋ ଉପରେ ପ୍ରତିଶୋଧଟା ଆରମ୍ଭ ହେଲକି... ?

କିଶୋର : ହଁ, ହଁ ପ୍ରତିଶୋଧ । ମତେ ଡାକଘରୁ ମାୟାର ଚିଠି ଚୋରି କରି ଆଣିବାକୁ ହେବ । ଯେପରି ମାୟାର ଚିଠି ରାଜୁ ଆଦୌ ନପାଏ । ଫଳରେ କ'ଣ ହେବ ଜାଣୁ ? ମାୟାର ବିରହରେ ରାଜୁ ପାଗଳ ହୋଇଯିବ ।

ଯୋଗୀ : ବିରହ, ଆ-ହା-ହା ବିରହ । ସେଇଟା କେଉଁଠି ମିଳେ ଆଜ୍ଞା ?

କିଶୋର : ତା'ପରେ ମତେ ସୁଯୋଗ ଦେଖି ରାଜୁକୁ କେତେ ମିଛ ଖବର ଯୋଗାଇବାକୁ ହେବ ।

ଯୋଗୀ : ମିଛ ଖବର ?

କିଶୋର : ହଁ, ମାୟା ନଈରେ ଡେଇଁ ଆତ୍ମହତ୍ୟା କଲା ବୋଲି, ରାଜୁକୁ ଖବର ଦେବାକୁ ହେବ । ସେ ମାୟାକୁ ହୃଦୟ ଦେଇ ଏତେ ଭଲପାଏ ଯେ, ତା'ର ମୃତ୍ୟୁ ଖବରରେ ନିଶ୍ଚୟ ସେ ପାଗଳ ହୋଇଯିବ ।

ଯୋଗୀ : ଆଉ ମାୟା... ?

କିଶୋର : ଏଇ ସୁଯୋଗ ନେଇ ମାୟାକୁ ମତେ ଭୁଲେଇବାକୁ ହେବ । ମାୟାର ଆଖି ଆଗରେ ଏକ ମାୟା ଜାଲ ସୃଷ୍ଟି କରିବାକୁ

ହେବ । ତୁ ପାରିବୁ ଯୋଗୀ ? ମତେ ଟିକିଏ ସାହାଯ୍ୟ କଲେ, ମନେ ରଖ, ମୁଁ ଖାଲି ପ୍ରତିଶୋଧ ନେବି ଆଉ ତୁ...

ଯୋଗୀ : ମାଷ୍ଟ୍ରାକୁ ନେଇ ଚଳେଇ ପାରିବନି ବାବୁ । କାହିଁ ତୁମକୁ ତ ଆଡ଼ ଆଖିରେ ଚାହୁଁନି, ଆଉ ମତେ...ତା' ଛଡ଼ା ଆଜ୍ଞା... ।

କିଶୋର : No ଆଜ୍ଞା, ନ ପାରିବୁ ଯଦି, ମାଷ୍ଟ୍ରାକୁ ନେଇ...

ଯୋଗୀ : କିନ୍ତୁ ଆଜ୍ଞା... ।

କିଶୋର : ତୋର ଯାହା ଦରକାର ହେବ ମୁଁ ଦେବି ।

ଯୋଗୀ : ପାରିବି ଯେ, କିନ୍ତୁ ଭୟ ହେଉଛି ।

କିଶୋର : ଭୟ ? ଏତେ ଦିନ କିଶୋରର ସାଙ୍ଗ ହୋଇ ତୁ ଏଇୟା ଶିଖିଲୁ ? ଜାଣ୍ଟି, କିଶୋର କାହାରିକୁ ଜୀବନରେ ଭୟ କରେନା, ଭୟନରେ କେବଳ ମୃତ୍ୟୁକୁ । ଆଉ ସେ ମୃତ୍ୟୁ ହେବ କେବଳ ତା' ନିଜ ହାତରେ ।

ଯୋଗୀ : କିନ୍ତୁ ଆଜ୍ଞା, ସେ ମକୁଟାକୁ ମତେ ଭାରି ଭୟ ହେଉଛି । ଯେମିତି ଲୋକଟା ସିଏ । ପ୍ରାଣରେ ମାରି ପକାଇବ ।

କିଶୋର : କିନ୍ତୁ ମୁଁ ସେ ବାଟ ସଫା କରିଦେବି । ଆଉ ବେଶୀ ଦିନ ନୁହେଁ ।

ଯୋଗୀ : ସେଇଟା ଯଦି କୁଆଡ଼େ ପଳାନ୍ତାନି ଆଜ୍ଞା, ଏ ଗାଁଟା ନିଶ୍ଚୋପ ହୋଇ ଯାଇ ଥାଆନ୍ତା, ଆଉ ମତେ ଫ୍ରୀ ପାସ ମିଳି ଯାଆନ୍ତା ବୁଲି ଚାଲି କରିବାକୁ ।

କିଶୋର : ଅପେକ୍ଷା କର ଯୋଗୀ, ସବୁ ହେବ । (ପକେଟରୁ ଟଙ୍କା ଦେଇଛି ଏବଂ ତୁରନ୍ତ ଆଣିବାର ଆଦେଶ ଦେଇଛି) ଯା' ନେଇ ଆସିବୁ ।

ଯୋଗୀ : ଯାଉଛି ଆଜ୍ଞା । (ଚାଲି ଯାଉଥିଲା)

କିଶୋର : ହଁ, ଶୁଣ । ଏକଥା ଯେପରି କେହି ନ ଜାଣନ୍ତି ।

ଯୋଗୀ : ବେଳେ ବେଳେ ତ ମୁଁ ନିଜେ ଜାଣି ପାରୁନି ଆଜ୍ଞା, ଆଉ କିଏ ଜାଣିବ । ମୁଁ ଚାଲିଲି ଆଜ୍ଞା । (ଚାଲିଗଲା)

କିଶୋର : ପୂର୍ବ ପୁରୁଷ ମାନେ ଠିକ୍ କହି ଯାଇଛନ୍ତି—
"ମୂର୍ଖ ମାଇଲେ ଯିବ ସର, ଦେବଙ୍କ ସଙ୍ଗେ କପଟ କଲ" ?
(ଖୁବ୍ ଜୋରରେ ହସିଛି)

## ଅନ୍ଧାର

## ପଞ୍ଚମ ଦୃଶ୍ୟ

[କୁଟୀର—ଘରର ଅଭ୍ୟନ୍ତର । ଇତ୍ୟବସରରେ ଦନେଇ ବେହେରା ଇହଜଗତ ତ୍ୟାଗ କରି ଚାଲି ଯାଇଥିଲେ । ଦନେଇଙ୍କ ମୃତ୍ୟୁର କିଛି ଦିନ ପରର ଘଟଣା । ନିଆଶ୍ରୀ ମାୟା ଖଟିଆଟି ଉପରେ ବସି ଏକାକିନୀ ଲୁହ ଢାଳୁଥାଏ । ଠିକ୍ ଏତିକି ବେଳେ ତା'ର ମନେ ପଡ଼ିଛି କିଛି ଦିନ ତଳେ ବାପା କହିଥିବା କେଇ ପଦ କଥା । ]

ଦନେଇଙ୍କ ସ୍ୱର : ତୁ ରାଜି ହୋଇଯା ମାୟା, ତୁ ରାଜି ହୋଇଯା । ଆଜିର କଥା କାଲିକି ନଥାଏ ମା' । ବଡ଼ ଲୋକ ସେ । ହୁଏତ ମନେ ନଥିବ ତାଙ୍କର ମାୟା କିଏ ?

ମାୟା : ବାପା !! ହିଁ, ହିଁ ତମେ ସତ କହିଥିଲ ବାପା । ସେ ବଡ଼ ଲୋକ । ସେ ଆଜି ଭୁଲି ଯାଇଛନ୍ତି ସବୁ କିଛି । ଭୁଲି ବା ନ ଯିବେ କାହିଁକି ? ମାୟା ତାଙ୍କର କିଏ ? ଏତେ ଦିନ ବିତିଗଲା...କାହିଁ ଥରେ ଚଟିତ ସେ ଦେଲେନି ? ଅନ୍ତତଃ ଥରେ ଆସି ଦେଖା କରିତ ସେ ଗଲେନି । ତୁମେ ଚାଲି ଗଲ ପରେ ମୋର ହୋଇ ଏଠି ଆଉ କିଏ ଅଛି, ବାପା । ମତେ କ୍ଷମା କର ବାପା, ମତେ କ୍ଷମାକର । ମୁଁ ତୁମ କଥା ରଖି ପାରିଲିନି ।

କିଶୋର : ଯେ ଚାଲି ଯାଇଛି ସେ ଚିର ଦିନ ପାଇଁ ଚାଲି ଯାଇଛି । ତାଙ୍କୁ କ୍ଷମା ମାଗିଲେ କିଛି ଫଳ ହେବନି । ବରଂ ଏବେ ମଧ୍ୟ ଯିଏ

ତୁମକୁ ଅପେକ୍ଷା କରି ରହିଛି, ତାକୁ କ୍ଷମା ମାଗି ତୁମ ଭୁଲ ପାଇଁ ।
ମୁଁ ତୁମକୁ ଆଦରରେ ଗ୍ରହଣ କରିବି ମାୟା ।

ମାୟା : କିଶୋର ବାବୁ !!!

କିଶୋର : ମୁଁ ଆସିଛି ଆଜି ତୁମ ପାଖକୁ ଶେଷ କଥା ଶୁଣିବାକୁ ।

ମାୟା : ଶେଷ କଥା... ?

କିଶୋର : ହଁ, ଶେଷକଥା । ମାୟା, କେତେ ଦିନ ଆଉ ଏମିତି ଅପେକ୍ଷା କରି ରହିବି କହିଲ ? ଧୂଳି ଖେଳ ବେଳର ରାଜୁ ଏବଂ ଆଜିର ରାଜୁ ମଧ୍ୟରେ କେତେ ତଫାତ୍ ତାହା ତୁମେତ ଜାଣ । ବଡ଼ ଲୋକର ପୁଅ ସେ...

ମାୟା : ନା, ନା, ତୁମେ ତାଙ୍କୁ ଭୁଲ ବୁଝନା କିଶୋର ବାବୁ । ସେ ବଡ଼ ଲୋକର ପୁଅ ହେଲେ ମଧ୍ୟ ବଡ଼ ଲୋକର ମନ ତାଙ୍କ ଠାରେ ନାହିଁ । ଏ ସବୁ ତୁମର ଭୁଲ ଧାରଣା ।

କିଶୋର : ଓଃ, ଭୁଲ ତା' ହେଲେ ମୁଁ କରିପକେଇଛିନା ? ମୁଁ ତୁମକୁ ଅପେକ୍ଷା କରି କରି ଜୀବନକୁ ଛାରଖାର କରି ଦେଇଛି । ଆଉ କିନ୍ତୁ ଅପେକ୍ଷା କରିପାରିବିନା । ମାୟା, ମୁଁ ଚାହେଁ ତୁମ ଠାରୁ ପ୍ରତିଶ୍ରୁତି ।

ମାୟା : ପ୍ରତିଶ୍ରୁତି ?

କିଶୋର : ହଁ, ହଁ, ପ୍ରତିଶ୍ରୁତି । ଚାଲିଆସ ମାୟା, ମୋ ହାତ ଧରି ତୁମେ ଚାଲିଆସ । ଦେଖିବ ତୁମର ଜୀବନ କେମିତି ସୁନାର ପରି ମହଲ ଭିତରେ ମହକି ଉଠିବ ।

ମାୟା : ଅଭଦ୍ର । ତୁମେ ଫେରିଯାଅ ଏଠୁ ।

କିଶୋର : କିଶୋର ଆଜି ଫେରି ଯିବାକୁ ଆସିନି । ସେ ଚାହେଁ ମାୟା ସହିତ ତା'ର ମିଳନ । ଆସ ମାୟା, ତୁମର ଏ ରୂପ ମାଧୁରୀ ଭରା ଢଳଢଳ ଯୌବନଟାକୁ ମତେ ଉପଭୋଗ କରିବାକୁ ଦିଅ ।

(କ୍ରମେ କ୍ରମେ ମାୟା ନିକଟକୁ ଆଗେଇଲେ)

ମାୟା : ମୁଁ ତୁମକୁ ନେହୁରା ହେଉଛି କିଶୋର ବାବୁ । ଗୋଟାଏ ଅବଳା, ଆତ୍ମସ୍ୱଜନା ସ୍ତ୍ରୀର ସର୍ବସ୍ୱ ଲୁଣ୍ଠନ କରି କ'ଣ ପାଇବ । ବରଂ ନିଜର ପାଶବିକ ପ୍ରବୃତ୍ତିକୁ ଚରିତାର୍ଥ କରିବା ପାଇଁ ଆଜିର ସମାଜରେ ଝିଅର ଅଭାବ ହେବେ ନାହିଁ ।

କିଶୋର : କିଶୋର ଦାଶଙ୍କୁ ଝିଅ ପୁଣି ଅଭାବ ହେବେ ! ହେଲେ, ମୁଁ ଚାହେଁ ତୁମପରି ଫୁଲର ମହକରେ ଥରକ ପାଇଁ ଏ ଖେଳିଲା ମନର ତୃଷା ମେଣ୍ଟାଇବାକୁ ଆସ ମାୟା...ଆସ... (ହାତଧରି ନେଉଛି)

ମାୟା : ଛାଡ଼ି ଦିଅ, ଛାଡ଼ି ଦିଅ ମତେ ।

[କିଶୋର ଖୁବ୍ ଜୋରରେ ମାୟାକୁ ଟାଣି କୋଳେଇ ନେଉଛି । ହଠାତ୍ ପ୍ରବେଶ କରିଛି ମୁକୁନ୍ଦ । ଏତାଦୃଶ୍ୟ ଅବସ୍ଥା ଦେଖି ସେ ଲମ୍ଫ ଦେଇଛି କିଶୋର ଉପରକୁ । ନିଜ ହାତରେ ଥିବା ଠେଙ୍ଗାରେ କିଶୋରକୁ ଶେଷ କରିଦେବାକୁ ପ୍ରତିଜ୍ଞା ବଦ୍ଧ ସେ । ମୁକୁନ୍ଦ ଠେଙ୍ଗାରେ ପାହାରେ ଦେବାକୁ ଗଲବେଳେ ମୁକୁନ୍ଦକୁ ନିବୃତ୍ତ କରିବାକୁ ତା'ର ଗୋଡ ଧରି ବସି ଯାଇଛି ମାୟା ।]

ମାୟା : ଥାଉ ମକୁଭାଇ, ତାଙ୍କୁ ଛାଡ଼ିଦିଅ ।
(ମକୁନ୍ଦ ମାରିବାରୁ ନିବୃତ୍ତ ହୋଇଛି ଏବଂ କିଶୋର ସବେଗେ ଚାଲି ଯାଇଛି । )

ମକୁନ୍ଦ : ଏଇଟାକୁ ପିଟି ପିଟି ମାରିଦେବା ଉଚିତ ଥିଲା । ଆରେ, କର୍ଣ୍ଣାର୍ଜୁନ ନାଟକରେ ମକୁ ଭୀମ ପାର୍ଟ କରୁଥିଲା ବୋଲି ସ୍ୟାର ମୋଟେ ଖିଆଲ ନାହିଁ ।

ମାୟା : ଚାଲ ମକୁଭାଇ, ଏ ଗାଁ ଛାଡ଼ି ଆମେ କୁଆଡ଼େ ଚାଲିଯିବା ।

ମକୁନ୍ଦ : କାହିଁକି ? ଏଠି ଆମେ କ'ଣ କାହାର ଖାଉ ନା' ଧାରୁ ।

ମାଧୁରୀ : ବାପା ମଲାପରେ ଗାଁ ଲୋକଙ୍କର ମୋ ଉପରେ ଦାଉ ସାଧିବା ଆରମ୍ଭ ହୋଇ ଯାଇଛି । ବାଟ ଘାଟ ସବୁଠି ଖାଲି ମୋର କଥା, ମୋର ନିନ୍ଦା ।

ମକୁନ୍ଦ : କିଏ କହିଲେ ଆମର କ'ଣ କରିବ ? ଖାଲି ଗୋଟାଏ ବର୍ଷ ଦୁଃଖ ଦୁଃଖେ କଟିଗଲେ ଗଲା ।

ମାଧୁରୀ : କିଛି ହେବନି ଭାଇ, ଏମିତି ଜଳି ଜଳି ବଞ୍ଚିବା ଅପେକ୍ଷା ମରିଯିବା ବରଂ ଭଲ । ମା' ଯାଇଥିଲେ । ବାପା ମଧ୍ୟ ଚାଲିଗଲେ । ରାଜୁ ବାବୁଙ୍କ ଭରସାରେ ବଞ୍ଚିବାର ଆଶା ଥିଲା । ହେଲେ ଶେଷରେ ସେ ମଧ୍ୟ ଭୁଲିଗଲେ ।

ମକୁନ୍ଦ : କ'ଣ ହୋଇଛି ମାଧୁରୀ ? ରାଜୁବାବୁ କ'ଣ ?

ମାଧୁରୀ : ସେ ଯିବାର ଆଜିକୁ ଛଅମାସ ବିତିଗଲାଣି । ଅଥଚ ଥରେ ଚିଠି ମଧ୍ୟ ଦେଇ ନାହାନ୍ତି । ଏମିତି ହା' ହୁତାଶର ବହ୍ନିରେ ଜଳି ଜଳି ବଞ୍ଚିବା ଅପେକ୍ଷା ମରିବା ଭଲ ନୁହେଁକି ?

ମକୁନ୍ଦ : ଛି, ମାଧୁରୀ । ତୋ ମକୁଭାଇ ବଞ୍ଚି ଥାଉ ଥାଉ... ।

ମାଧୁରୀ : ନା, ମକୁଭାଇ ! ଆଉ କେତେ ଦିନ ଏ ହତଭାଗିନୀ ଭଉଣୀଟା ପାଇଁ ତମେ ହନ୍ତସନ୍ତ ହେବ ? ଘର ବନ୍ଧକ ଦେଇ ବାପା ସାହୁକାର ଘରୁ ଟଙ୍କା ଆଣିଥିଲେ । ସେ ଟଙ୍କା ଆଜିଯାଏ ଶୁଝା ପଡ଼ିନି । ଏ ଘର ତାଙ୍କୁ ଦେଇ ଦିଅ, ଆଉ ମତେ ମୋ ରାସ୍ତାରେ ଯିବାକୁ ଦିଅ । ପରଲୋକରେ ବାପାଙ୍କୁ କାହିଁକି ଋଣୀ ରଖିବା...

ମକୁନ୍ଦ : କିନ୍ତୁ ଏ ପରିସ୍ଥିତିରେ ତୁ କୁଆଡ଼େ ଯିବୁ ମାଧୁରୀ ?

ମାଧୁରୀ : ଏ ଗୋଡ଼ ଦୁଇଟା ଯେଉଁ ଆଡ଼କୁ ନେଇଯିବ । ଏତେ ବଡ଼ ଦୁନିଆରେ କ'ଣ ମୁଣ୍ଡ ଗୁଞ୍ଜିବା ପାଇଁ ମତେ ସ୍ଥାନ ମିଳିବନି ? କେଉଁଠି ଆଶ୍ରା ନ ମିଳିଲେ କ'ଣ ମୋ ଭାଗ୍ୟକୁ ଶେଷରେ ସବୁ ନଈ, ପୋଖରୀ ଶୁଖିଯିବ ? ଏ ଅଲୋଡ଼ା ଜୀବନଟାକୁ... ।

ମକୁନ୍ଦ : ଛି, ମାୟା, ତୁ କ'ଣ ପାଗଳୀ ହୋଇଗଲୁ ।

ମାୟା : ପାଗଳୀ ହୋଇଥିଲେତ ଭଲ ହୋଇଥାନ୍ତା ମକୁଭାଇ ! ଅନ୍ତତଃ ଏ ରୂପ ଅନଳରେ ଝାସ ଦେବାକୁ କୀଟ, ପତଙ୍ଗ ଆସି ନ ଥାନ୍ତେ । ମୁଁ ମନ ଖୋଲି ହସି ପାରନ୍ତି, ହୃଦୟ ଖୋଲି କାନ୍ଦି ପାରନ୍ତି ।

ମକୁନ୍ଦ : ଛି, ମାୟା, ଏତେ ଭାଙ୍ଗି ପଡ଼ିଲେ ଏ ସଂସାରରେ ଆମେ ମଣିଷ ହେଲେ କାହିଁକି । ସହିବା ଶକ୍ତି ଅଛି ବୋଲିତ ଆମେ ମଣିଷ । ତୁ ପରା ସେ ଦିନ ମତେ କେତେ କଥା କହୁଥିଲୁ । ଚାଲ, ରାତି ଆସି ଅନେକ ହେଲାଣି । ଦ୍ଵାର ବନ୍ଦ କରି ଶୋଇପଡ଼ । ମୁଁ ସକାଳୁ ଆସିବି ଯେ ।

(ମକୁନ୍ଦ ଚାଲିଗଲା । ତା'ର ଯିବା ବାଟକୁ ଅନାଇଁ ଠିଆ ହୋଇଥିଲା ମାୟା । ଆଖିରେ ଲୁହର ବନ୍ୟା)

—ଅଂଧାର—

## ଷଷ୍ଠ ଦୃଶ୍ୟ

[ପୂର୍ବ ବର୍ଣ୍ଣିତ ରାଜୁର ବସାଘର । ଟେବୁଲ୍ ଉପରେ ମାୟାର ଫଟୋଟିଏ । ଭବିଷ୍ୟତର କଳ୍ପନାରେ ବିଭୋର ହୋଇ ରାଜୁର ମନେ ପଡ଼ି ଯାଉଥିଲା ହଜିଲା ଦିନର କେଇପଦ କଥା]

ଦୀନବନ୍ଧୁ ସ୍ଵର : ଦୀନବନ୍ଧୁ ମହାନ୍ତିର ପୁଅ ରାଜୁ—ସେ ପୁଣି ଗୋଟାଏ ଗରିବ କେଉଟ ଝିଅର ପଣତ ଉହାଡରେ ହଜିଯିବ ତ'' ଆଭିଜାତ୍ୟକୁ ଜଳାଞ୍ଜଳି ଦେଇ ।

ମକୁନ୍ଦର ସ୍ୱର : ଗରିବ କେଉଟ ଘରର ଅଲେଢ଼ା ଅଖୋଜା ଫୁଲଟିକୁ ତୁମେ ଠିକ୍ ବାଟରେ ଚଳେଇ ନେଇ ପାରିବତ ବାବୁ !!!

ମାଷ୍ଟ୍ରାର ସ୍ୱର : ଏଇ ଦେଖତ ରାଜୁ ଭାଇ, ଆକାଶରେ କେମିତ ଦୁଇଟି ପକ୍ଷୀ ଉଡ଼ି ଯାଉଛନ୍ତି...ଆଉ ଆମେ... ?

ରାଜୁ : (ଭାବପ୍ରବଣ ହୋଇ) ଆମେ ବି ଉଡ଼ିଯିବା ସେଇ ଦେଶକୁ, ଯେଉଁଠି ନଥିବ ବାଧା ଆଉ ବନ୍ଧନ ।

(ବାହାରେ ଶୁଣାଗଲା—"ଚିଠି ନିଅ ବାବୁ" । ରାଜୁ ବାହାରକୁ ଯାଇ ଚିଠି ନେଇ ଆସି ଖୋଲି ପଢୁଛି)

ରାଜୁ ବାବୁ,

ବଡ଼ ଘରର ପୁଅ ତୁମେ । ବଡ଼ ଘରେ ତୁମର ଜନ୍ମ । ବଡ଼ ଘରର ପରଦା ଆଢୁଆଳରେ ଯିଏ ବଢ଼ି ଆସିଛି । ତା'ର ନଈକୂଳର ଅଚାଶଆ ଅପନା ଗଳି ଭିତରେ ବଢ଼ି ଆସିଥିବା ଅଭାଗିନୀ ଝିଅର ମନ ବୁଝିବା ଶକ୍ତି ଆସନ୍ତା କୁଆଡୁ ? କେତେ ଦିନ ଆଉ ମାଷ୍ଟ୍ରା ତୁମକୁ ଅପେକ୍ଷା କରନ୍ତା ? କେତେ ଅପମାନ ଆଉ ତୁଣ୍ଡ ବାଇଦ ଶୁଣି ଶୁଣି ବଧୀର ହୁଅନ୍ତା ? ଫଳରେ ମୁଁ ବାଧ କଲି ମାଷ୍ଟ୍ରାକୁ ଅନ୍ୟତ୍ର ବାହା ହେବା ପାଇଁ । ନଈ କୂଳରେ ତୁମ ସହିତ ମାଷ୍ଟ୍ରାର ମିଳନ କଥା ପ୍ରଚାରିତ ହୋଇ ଯାଇଥିଲା । ଶେଷରେ ମୁଁ ବାଧ ହେଲି ସୁନ୍ଦରପୁର ଯୋଗୀଆ ସହିତ ବାହାଘର ଠିକ୍ କରିବା ପାଇଁ । କିନ୍ତୁ ମାଷ୍ଟ୍ରା ମତେ ବାରମ୍ବାର ମନା କରିଥିଲା ଏ ବାହାଘର ବନ୍ଦ କରିବା ପାଇଁ । ଶେଷରେ ବାହାଘର ଦିନ ଯେତେବେଳେ ବର ଧରି ହୋଇ ଆସିଲା ଠିକ୍ ସେତିକି ବେଳୁ ମାଷ୍ଟ୍ରାର ଦେଖା ମିଳିଲାନି । ବହୁତ ଖୋଜା ଖୋଜି କଲା ପରେ ଶେଷରେ ନଈ କୂଳରୁ ମାଷ୍ଟ୍ରାର ଶବଟାକୁ ହିଁ ପାଇଲି । (ଚିଠି ପଢ଼ା ବନ୍ଦ କରି ହଠାତ୍ ରାଜୁ 'ମାଷ୍ଟ୍ରା' ବୋଲି ଚିତ୍କାର କରିଛି । ତା' ମନରେ ଯେପରିକି ବହି ଯାଉଛି ଝଡ । ସେ ଏକ ରକମ ପାଗଳ ହୋଇ ଯାଉଛି ଯେମିତି । ପୁଣି ଚିଠି ଟାକୁ ଦେଖିଛି)

ବହୁତ ଖୋଜିବା ପରେ ମାୟାର ତୁମ ନିକଟକୁ ଯେଉଁ ଶେଷ ଚିଠିଟି ମିଳିଲା ସେଇଟି ପଠାଇଲି । (ପୁଣି Cover ଖୋଲିଛି ରାଜୁ । ହଠାତ୍ ତଳକୁ ଗଳି ପଡ଼ିଛି ଖ୍ଲେଟ୍ କାଗଜଟିଏ । ଗୋଟାଇ ଆଣି ପଢ଼ିଛି । )

ପ୍ରିୟତମ,

ଅଭାଗିନୀର ଶେଷ ପ୍ରଣାମ ନେବ । ବାମନ ହୋଇ ସ୍ୱର୍ଗର ଚନ୍ଦ୍ରକୁ ହାତ ବଢ଼ାଇବା ଯାହା ମୋ ଅବସ୍ଥା ଠିକ୍ ସେଇଆ ହେବ ବୋଲି କଏ କଳ୍ପନା କରିଥିଲା ? ଯେଉଁ ବେଳାଭୂମି ଉପରେ ଆମେ ଆମର ପଥର ଘରର କଳ୍ପନା କରିଥିଲେ, ସେ କଳ୍ପନା କଳ୍ପନାରେ ହିଁ ରହିଯାଉ । ଖାଲି ମୋର ଏତକି ପ୍ରାର୍ଥନା— ଏମିତ ମୋ ଭଳି ଅଭାଗିନୀ ତୁମକୁ... । ନାଁ ଆଉ କିଛି ଲେଖିବାକୁ ବେଳ ନାହିଁ । ହୁଏତ ଆଉ ଅଳ୍ପ ସମୟ ପରେ ସେମାନେ ମତେ ଧରିନେଇ ଗୋଟାଏ ଅଯୋଗ୍ୟ ହାତରେ ଛନ୍ଦି ଦେବେ । ଯାଉଛି ମୁଁ । ଯଦି ଆର ଜନ୍ମରେ ସାକ୍ଷାତ ହୁଏ ତା ହେଲେ ମୁଁ, ତୁମକୁ ନେଇ ପୁଣି ଘର ସଂସାର କଳ୍ପନା କରିବାର ଆଶାରେ ରହିଲି । (ଇତି)

ତୁମର

ଅଭାଗିନୀ

ମାୟା

(ପୁଣିରାଜୁ "ମାୟା" ବୋଲି ଖୁବ୍ ଜୋରରେ ଚିତ୍କାର କରିଛି । କ୍ରମେ କ୍ରମେ ପାଗଳ ଅବସ୍ଥାକୁ ଗତି କରୁକରୁ "ମାୟା" ବୋଲି ଚିତ୍କାର କରିଛି)

ରାଜୁ : No, Never । ମଲୁ, ଶେଷରେ ତୁ ମଧ୍ୟ ବିଶ୍ୱାସ କଲୁନି ! (ପ୍ରବେଶ କରିଛି ଶରତ । ରାଜୁର ଏଭଳି ଅବସ୍ଥା ଦେଖି ସେ ନୀରବ ଦ୍ରଷ୍ଟା ରୂପେ ଠିଆ ହୋଇ ରହିଛି । ହଠାତ୍ ରାଜୁର ନଜର ପଡ଼ିଛି ଶରତ ଉପରେ । ମକୁନ୍ଦ ମନେକରି ଶରତର କାମିଜକୁ ଧରି ନେଇଛି ରାଜୁ ।)

ମଲୁ ! ତୁ ଗୋଟାଏ ବିଶ୍ୱାସ ଘାତକ । ମାସ୍ଟାର ବାହାଘର ଯୋଗାଡ଼ କରି ଦେଇ ପାରିଲୁ ଅଥଚ ତା' ବେକରେ ଛୁରି ଦେଇ ସାରିବା ପରେ ମତେ ଟିକିଏ ବିଷ ଆଣି ଦେଇ ପାରିଲୁନି ?

ଶରତ : ମୁଁ ମଲୁ ନୁହେ ରଞ୍ଜୁ, ମୁଁ ଶରତ ।

ରଞ୍ଜୁ : ତୁ ମଲୁ ନୋହୁଁ ? ଶରତ... । ଶରତ ତୁ ଗାଁକୁ ଯାଇ ସେ ମଲୁର ମୁଣ୍ଡଟାକୁ ମତେ ଆଣି ଦେଇ ପାରିବୁ ? ତୁ ଯାଇ ପାରିବୁ, ଶରତ ? ତୁ ଏତିକି କରି ପାରିବୁ ?

ଶରତ : ରଞ୍ଜୁ ! ତୁ ପାଗଳ ହୋଇ ଗଲୁନା କ'ଣ ?

ରଞ୍ଜୁ : ମୁଁ ପାଗଳ ହୋଇଗଲି । କିଏ କହୁଛି (ହସିଛି) ସେ ବାହାଘର ଆଉ ସେ ଫୁଲମାଳ, ସବୁ କ'ଣ ଛଳନା ? ନା' ମୋ ପାଇଁ ସେ ଦେହେ-ବେଲେ ମରି ପାରିଲା...ଆଉ ମୁଁ । (କାନ୍ଦୁଛି)

(ମଞ୍ଚ ଅନ୍ଧାର ହୋଇ କିଛି କ୍ଷଣ ପରେ ପୁଣି ଆଲୋକିତ ହେଲା । ଦେଖାଗଲା ପୁଣି ସେହି କକ୍ଷରେ ଶରତ ବିବ୍ରତ ହୋଇ ପଦଚାରଣ କରୁଛି । ମଝିରେ ମିଝିରେ ବାହାରକୁ ଦୃଷ୍ଟି ନିକ୍ଷେପ କରୁଥିଲା । କିଛି କ୍ଷଣ ପରେ ପ୍ରବେଶ କରିଛି ଗୀତା)

ଗୀତା : ଶରତ ବାବୁ ! ମତେ ଏଠିକି କାହିଁକି ଡ଼କାଇଲେ ?

ଶରତ : ତୁମେ ମୋର ଗୋଟାଏ ଅନୁରୋଧ ରଖିପାରିବ ଗୀତା ?

ଗୀତା : ଅନୁରୋଧ ?

ଶରତ : ହଁ, ଗୀତା ଅନୁରୋଧ । ଆଉ ସେ ଅନୁରୋଧ ମୋ ପାଇଁ ନୁହେଁ, ରଞ୍ଜୁ ପାଇଁ ।

ଗୀତା : (ହସି) ରଞ୍ଜୁ ବାବୁଙ୍କ ପାଇଁ ଆପଣ କରିବେ ଅନୁରୋଧ !!! ବୁଝିଲେ ଶରତ ବାବୁ, ଏମିତି ଦିନେ ମୁଁ ଅନୁରୋଧ କରିଥିଲି ରଞ୍ଜୁବାବୁଙ୍କ ପାଖରେ ଆଉ ସେ ଅନୁରୋଧକୁ... ।

ଶରତ : ସେ ସବୁ ପୂର୍ବ କଥା ଭୁଲି ଯାଇ ତୁମେ ମତେ ସାହାଯ୍ୟ କର ଗୀତା । ରଜୁ ଆଜି ପାଗଳ ।

ଗୀତା : ରଜୁ ବାବୁ ପାଗଳ ?

ଶରତ : ହଁ, ରଜୁର ପୂର୍ବ ଜୀବନକୁ ଫେରାଇ ଆଣିବା ପାଇଁ ତୁମେ ମତେ ସାହାଯ୍ୟ କର ଗୀତା, Please ।

ଗୀତା : ରଜୁ ବାବୁଙ୍କ ପୂର୍ବ ଜୀବନ ? କଥା କ'ଣ ଶରତ ବାବୁ ? ରଜୁ ବାବୁ କାହାନ୍ତି ?

ଶରତ : କହିଲି ପରା ରଜୁ ଆଜି ପାଗଳ ହୋଇଯାଇଛି ।

ଗୀତା : ପାଗଳ !!!

ଶରତ : ହଁ ଗୀତା, ରଜୁ ବର୍ତ୍ତମାନ ପାଗଳ ପ୍ରାୟ । ଆଉ ତାକୁ ପାଗଳ କରିଛି ତା'ର ପ୍ରେମିକା ମାୟା । ଯାହାକୁ ଜୀବନର ସାଥୀକରି ଜୀବନକୁ ସୁଖମୟ କରିବ ବୋଲି ଭାବିଥିଲା, ସେ ଜୀବନ ହୋଇଛି ହାହାକାରମୟ । ସେ ସୁଖ ଆଜି ହୋଇଛି ମରୀଚିକା ।

ଗୀତା : ମାୟା କ'ଣ ନାରାଜ ହୋଇଛି ଶରତ ବାବୁ ?

ଶରତ : ନାରାଜ ହେବା ପୂର୍ବରୁ ଜୀବନଟାକୁ ସେ ବିସର୍ଜନ କରି ଦେଇଛି ନଦୀ ଗର୍ଭରେ ।

ଗୀତା : ମାୟା ତା' ହେଲେ... ।

ଶରତ : ହଁ, ଗୀତା । ମାୟା ଆଉ ଜୀବନରେ ନାହିଁ । ମାୟାର ମୃତ୍ୟୁ ଖବର ପାଇ ପାଗଳ ହୋଇଛି ରଜୁ । ତୁମେ ଟିକିଏ ସାହାଯ୍ୟ କର ଗୀତା । ତୁମେ ସାମାନ୍ୟ ଚେଷ୍ଟାକଲେ ହିଁ ତାକୁ ପାଗଳ ଅବସ୍ଥାରୁ ଫେରାଇ ଆଣି ପାରିବ ।

ଗୀତା : ନା' ନା' ଶରତ ବାବୁ, ମୁଁ ପାରିବିନି ।

ଶରତ : ନା' ଗୀତା, ତୁମେ ନିଶ୍ଚୟ ପାରିବ । ସେ ଆତ୍ମ ବିଶ୍ୱାସ ମୋର ଅଛି । ଆଜିଠୁଁ ଏ ଘରେ ରହି ତୁମେ ରଜୁର ସେବା କରିବ । ତୁମ ଅଭିନୟ ସଫଳ ହେଲେ ହୁଏତ...

ଗୀତା : ଅଭିନୟ !

ଶରତ : ମାଧୁରୀକୁ ତୁମେ ଭଲ ରୂପେ ଜାଣ । ଆଜିଠୁଁ ତୁମେ ମାଧୁରୀର ଅଭିନୟ କରି ରାଜୁର ମନକୁ ଭୁଲାଇବ । ଯା ଫଳରେ, ତୁମରି ହାତର ପରଶରେ ସେ ନିଶ୍ଚୟ ଭଲ ହୋଇଯିବ ।

ଗୀତା : କିନ୍ତୁ ଶରତ ବାବୁ, ପରେ ମୁଁ ଯଦି ରାଜୁ ବାବୁଙ୍କ ଠାରୁ ଅପମାନ ପାଏ...?

ଶରତ : ମୁଁ ସବୁ ଜାଣେ ଗୀତା, ସବୁ ଜାଣେ । ହେଲେ... ନିଜ ସେବା ଦ୍ୱାରା ମଣିଷ ଏ ଜଗତକୁ ଜୟ କରିପାରେ, ରୂପ ଦ୍ୱାରା ନୁହେଁ... ଜୀବନ ରଙ୍ଗମଞ୍ଚରେ ତୁମେ ଯଦି ଏହି ନୂତନ ଭୂମିକାରେ ଅଭିନୟ କରିବାକୁ ରାଜି ନୁହଁ, ତେବେ ସେବାଧର୍ମ ଗ୍ରହଣ କରିବାରେ ତୁମର କିଛି ଆପତ୍ତି ଅଛି ?

ଗୀତା : ଅଭିନୟ ! ସେବା ଧର୍ମ !! ଏସବୁ କ'ଣ ମୁଁ ପାରିବି ?

ଶରତ : ନିଶ୍ଚୟ ପାରିବ ତୁମେ । ତୁମକୁ ଆଜିଠୁଁ ସେଇ ସେବାଧର୍ମ ଗ୍ରହଣ କରିବାକୁ ହେବ । ଫଳରେ ତୁମେ ତୁମର ନିଖୁଣ ଅଭିନୟ ବଳରେ ରାଜୁର ମନକୁ କିଣି ନେଇ ପାରିବ । ହଁ ଗୀତା, ତୁମେ ଏଇଠି ରହ । ମୁଁ ଆଜି ତୁମ ଗାଁକୁ ଯାଇ ସେଠାକାର ସମସ୍ତ ଖବର ବୁଝି, ରାଜୁର ବାପାଙ୍କ ସହିତ ଦେଖା କରିବି । ମୁଁ ଫେରିବା ପର୍ଯ୍ୟନ୍ତ ତୁମେ ରାଜୁର ଦାୟିତ୍ୱ ନେଇ ଏଠାରେ ରହିବ । ଫେରିଲେ ଅନ୍ୟ କଥା ।

ଗୀତା : କିନ୍ତୁ... ।

ଶରତ : କିନ୍ତୁର ପ୍ରଶ୍ନ ନାହିଁ ଗୀତା । ସମୟ ହୋଇ ଗଲାଣି । ମତେ ଏଇଠୁ ଷ୍ଟେସନ ଗାଡ଼ି ଧରି ଯିବାକୁ ହେବ । **wish you good luck.**

(ପ୍ରସ୍ଥାନ)

**ଅନ୍ଧାର**

## ସପ୍ତମ ଦୃଶ୍ୟ

(କକ୍ଷ— ଦୀନବନ୍ଧୁ ଶ୍ୱାସ ରୋଗରେ ପୀଡ଼ିତ । ଶୋଇଛନ୍ତି ସେ । ପାଖରେ ସପନ ଠିଆ ହୋଇ ସେବା କରୁଛି)

ଦୀନବନ୍ଧୁ : ସପନ, ରାଜୁ ପାଖରୁ କିଛି ଖବର ଆସିଲା ?

ସପନ : ନା' ବାବୁ । ସେଇ ଦିନଠୁଁ ଖବର ଗଲା ଯେ, ଉତ୍ତର ନାହିଁ ।

ଦୀନବନ୍ଧୁ : ତୁ ଆଜି ମା' ସପନ । ଗୋଟିଏ ବୋଲି ପୁଅ । ତା'ର ମୁଖ ଟିକିଏ ତ ଦେଖି-ପାରିଲିନି । ଶେଷ ବେଳରେ ହେଲେ ତା'କୁ କ'ଣ ଟିକିଏ ଦେଖିପାରିବି ନି ? ଆଉ ବେଶିଦିନ ବଞ୍ଚିବିନି ସପନ, ମତେ ସେ ପୁରରୁ ଡାକରା ଆସିଲାଣି । (ଖୁବ୍ ଜୋର୍‌ରେ କାଶିଲେ)

(ସପନ ସେବା କରୁଥାଏ । ଏତିକି ବେଳେ ଭିତରକୁ ପଶି ଆସିଛି ଶରତ । ସପନ ଶରତ ବାବୁଙ୍କୁ ହଠାତ୍ ଦେଖିଛି)

ସପନ : ଆରେ, ଶରତ ବାବୁ ! ନମସ୍କାର ବାବୁ ।

ଦୀନବନ୍ଧୁ : କିଏ ସପନ ?

ଶରତ : ନମସ୍କାର ମଉସା ।

ସପନ : ସାନ ବାବୁଙ୍କ ସାଙ୍ଗ ଶରତ ବାବୁ କଟକରୁ ଆସିଛନ୍ତି । ବୋଧହୁଏ ସାନ ବାବୁଙ୍କ ପାଖରୁ...... ।

ଶରତ : ମୁଁ ଖୁବ୍ ଜରୁରୀ କାମରେ ଆସିଥିଲି ମଉସା । ମତେ ଆଜି ଯେ କୌଣସି ମତେ କଟକ ଫେରି ଯିବାକୁ ହେବ ।

ସପନ : ଜରୁରୀ କାମ ?

ଶରତ : ଏ ଗାଁରେ ମାୟା ବୋଲି କୌଣସି ଏକ ଝିଅ ଥିଲା ମଉସା ?

ଦୀନବନ୍ଧୁ : କ'ଣ ହେଲା ? ମାୟା ପାଖରେ ତୁମର କି କାମ ?

ଶରତ : ସେ ଏକ ବିରାଟ ଇତିହାସ । ରାଜୁ ମାୟାକୁ ଜୀବନ ଦେଇ ଭଲ

ପାଉଥିଲା । ଏପରିକି ଫୁଲମାଳର ଆଦାନ ପ୍ରଦାନରେ ଦୁହିଁଙ୍କ ବାହାଘର ମଧ୍ୟ ସରି ଯାଇଥିଲା ।

ଦୀନବନ୍ଧୁ : କ'ଣ କହୁଛ ଶରତ ? ରାଜୁ ସଙ୍ଗତ ମାଷ୍ଟ୍ରର ବାହାଘର । ନା' ନା' ଏ ସବୁ ମନଗଢ଼ା କଥା । ମୋର ମାନ ମର୍ଯ୍ୟାଦାକୁ ବଳି ଦେଇ ରାଜୁ ଏ କାମ କରି ପାରେନା ।

ଶରତ : ମନଗଢ଼ା କଥା ନୁହେଁ ମଉସା । ଏ ବିପଦ ବେଳେ ଆଉ ମାନ ମର୍ଯ୍ୟାଦା ଖୋଜିଲେ ଚଳିବନି । ଯାହା ହେବାର ହୋଇ ଯାଇଛି ।

ସପନ : କି ବିପଦ ଶରତ ବାବୁ ? କଥା କ'ଣ ?

ଶରତ : ମାଷ୍ଟ୍ର ନଈରେ ଡେଇଁ ଆତ୍ମହତ୍ୟା କରିଛି ବୋଲି ଖବର ପାଇ ରାଜୁ କାଲିଠାରୁ ପାଗଲ ପ୍ରାୟ ହୋଇ ଯାଇଛି ।

ଦୀନବନ୍ଧୁ : ପାଗଲ ? ରାଜୁ ପାଗଲ ହୋଇ ଯାଇଛି ? ?

(ଉତ୍ତ୍ୟକ୍ତ ହୋଇ ଉଠି ପଡ଼ୁଥିଲେ । କାଶ ଆର ହେଲା । ଶରତ ଓ ସପନ ଧରି ବସାଇଲେ )

ଶରତ : ହଁ, ମଉସା, ରାଜୁ ବର୍ତ୍ତମାନ ପାଗଲ । ଆପଣଙ୍କ ଗାଁ ଝିଅ ଶୀତାର ତତ୍ତ୍ୱାବଧାନରେ ତାକୁ ଛାଡ଼ିଦେଇ ବାଧ ହୋଇ ମୁଁ ଏଠାକୁ ଆସିଛି ପ୍ରକୃତ ଘଟଣା କ'ଣ ବୁଝିବି ବୋଲି ।

ସପନ : କିନ୍ତୁ ମାଷ୍ଟ୍ରାତ ବଞ୍ଚିଛି ବାବୁ ।

ଶରତ : ମାଷ୍ଟ୍ର ବଞ୍ଚିଛି ! ତା' ହେଲେ ସେ ଚିଠି ଦେଲା କିଏ ? ମତେ ମାଷ୍ଟ୍ରାକୁ ନେଇ ଆଜିହିଁ କଟକ ଯିବାକୁ ହେବ । ମାଷ୍ଟ୍ରାକୁ ନ ଦେଖିଲେ ରାଜୁର ପାଗଲାମି କେବେ ଭଲ ହେବନାହିଁ । କୁହନ୍ତୁ ଆପଣ କ'ଣ ଚାହାନ୍ତି ? ଆଭିଜାତ୍ୟ ନା ରାଜୁ ?

ସପନ : ଚାଲବାବୁ, ମାଷ୍ଟ୍ର ପାଖକୁ ଯିବା ଚାଲ ।

ଦୀନବନ୍ଧୁ : (ଉତ୍ତ୍ୟକ୍ତ ହୋଇ ଉଠିଲେ) ନା, ତୁମେମାନେ କେହି ଯାଇ ପାରିବନି । ମୁଁ ମୋ ଆଭିଜାତ୍ୟକୁ କ୍ଷୁର୍ଣ୍ଣ କରି ଏପରି ଏକ ଅସବର୍ଣ୍ଣ ବିବାହରେ ସମ୍ମତ ହୋଇପାରେନା ।

ଶରତ : ସବର୍ଣ୍ଣ ଅସବର୍ଣ୍ଣର ପ୍ରଶ୍ନ ବିପଦ ବେଳେ ଧରି ବସିଲେ ଚଳିବନି ମଉସା ।

ଧନବନ୍ଧୁ : ନା' ନା' କେବେ ନୁହେଁ । ଏ ଘରର ସପ୍ତପୁରୁଷଙ୍କୁ ଉଦ୍ଧାର କରିବା ପାଇଁ ତା' ହେଲେ ମତେ...(କାଶ ଉଠିଲା । ଭୀଷଣ କାଶୁ କାଶୁ ଉଠିପଡ଼ି ପାଖରେ ଥିବା ଚୌକି ଦେହରେ ଧକ୍କା ବାଜି ପଡ଼ିଗଲେ । ସଙ୍ଗେ ସଙ୍ଗେ ପ୍ରାଣବାୟୁ ଉଡ଼ିଗଲା)

ଶରତ : ମଉସା !

ସପନ : ବାବୁ ! ! (ଦୁହେଁ କାନ୍ଦି ଉଠିଲେ)

## ଅନ୍ଧାର

## ଅଷ୍ଟମ ଦୃଶ୍ୟ

[ସହରର ଏକ ପାର୍କ—କିଶୋର ଓ ଯୋଗୀ ଦୁହେଁ ଆସିଥିଲେ ଚିଠିର ପ୍ରତିକ୍ରିୟା ଅନୁଧ୍ୟାନ କରିବାକୁ । ସେତେବେଳକୁ ପୋଲିସ କିଶୋରର ପିଛା ଧରିଲେଣି, ଡ଼ାକ ଡବାରୁ ଚିଠି ଚୋରାଇ ଆଣିବା ଅପରାଧରେ । କିଶୋର ମ୍ରିୟମାଣ ହୋଇ ବକ ବୁଲୁଥାଏ । ଯୋଗୀ ହତବାକ୍ ହୋଇ ଶୁଣୁଥାଏ]

କିଶୋର : ବୁଝିଲୁ ଯୋଗୀ । ତୁ ଗାଁକୁ ଫେରିଯା' । ମତେ କିଛି ଦିନ ପାଇଁ ଗାଁ ଛାଡ଼ି ଆତ୍ମଗୋପନ କରିବାକୁ ହେବ । ନଚେତ ବିଷ ଖାଇ ମରିବାକୁ ହେବ । ପୋଲିସ ଠିକ୍ ଠଉରେଇ ସାରିଲେଣି । ମୁଁ ପୋଷ୍ଟ ବାକ୍ସରୁ ଚିଠି ଚୋରାଇ ଆଣିବା କଥା ।

ଯୋଗୀ : ତେବେ ମୁଁ କ'ଣ କରିବି ଆଜ୍ଞା ? ମତେ କିଛି ଉପାୟ ବତାନ୍ତୁ ।

କିଶୋର : ତୋ ବାଟ ତୁ ଏଣିକି ଦେଖ ଯୋଗୀ । ତୋ ବାଟ ତୁ ଦେଖ । ମୋ କାମ ସଫଳ ହୋଇ ଯାଇଛି । ମୋ ଚିଠି ଦ୍ୱାରା ରାଜା ହୋଇଛି ପାଗଳ ଏବଂ ମତେ ହୋଇଛି ଦୋଷୀ ।

ଯୋଗୀ : ଆପଣ କେମିତି ଜାଣିଲେ ଆଜ୍ଞା ?

କିଶୋର : ଯୋଗୀ ! ଏତେ ଦିନ ମୋ ପଛରେ ଦୌଡ଼ି ଦୌଡ଼ି ତୁ ମତେ ଚିହ୍ନି ପାରିଲୁନି ? ରାଜାର ଜଣେ ବନ୍ଧୁ ଶରତ ଆମ ଗାଁକୁ ଯାଇଛି ମାସ୍ତ୍ରାକୁ ଧରି ଆସିବା ପାଇଁ ।

ଯୋଗୀ : (ନିରାଶ ହୋଇ) ମାସ୍ତ୍ରା ତା' ହେଲେ ଗାଁ ଛାଡ଼ି ଚାଲି ଆସିବ । ତା' ହେଲେ ମୁଁ କ'ଣ ଶିଶୁପାଳ ହୋଇଯିବି ଆଜ୍ଞା... ।

କିଶୋର : ଖାଲି ମାସ୍ତ୍ରା ନୁହେଁ । ତା' ସଙ୍ଗେ ସଙ୍ଗେ ମୁକୁନ୍ଦ ମଧ୍ୟ... ।

ଯୋଗୀ : (ଆନନ୍ଦ ହୋଇ) ତା' ହେଲେ ମୁଁ ରକ୍ଷା ପାଇଗଲି ଆଜ୍ଞା । ତା' ହେଲେ (ପାଟିରେ ଗାଡ଼ି ଚାଲିବା ଶବ୍ଦ କରି) ମୁଁ ଚାଲିଲି ଆଜ୍ଞା ।

କିଶୋର : ମୋର ମଧ୍ୟ ଯିବା ବେଳ ପାଖେଇ ଆସିଲାଣି ଯୋଗୀ । ମୁଁ ଚାଲିଯିବି । ଜୀବନର ପ୍ରତି ପଦେ ପଦେ ବାଧା ପାଇ ଶେଷରେ ବରି ନେଇଥିଲି ଉତ୍କଟ ମଦ । ତାକୁ ଖାଇ ଖାଇ ଜୀବନର ସବୁ ଦୁଃଖ ଭୁଲିଯିବି ବୋଲି ଭାବିଥିଲି । ତେବେ ମଧ୍ୟ ଶାନ୍ତି ନ ପାଇ ପ୍ରତିହିଂସାର ବହ୍ନି ମନ ମଧ୍ୟରେ ଜଳି ଉଠିଲା । କୁପଥ ଅନୁସରଣ କରିବାକୁ ବାଧ୍ୟ ହେଲି ।

ଯୋଗୀ : ମା'ଲ ଆଣନ୍ତୁ ଯେ ଆଜ୍ଞା । ଏତେ ବଡ଼ ସହରରେ ବାଟ ଭୁଲିଗଲେ... ।

କିଶୋର : ନା' ଆଉ । ସବୁ ଆଶା ମୋର ବୃଥା ହୋଇ ଯାଇଛି । ସବୁ କଳ୍ପନା ମୋର ପାଣିଫୋଟକା ପରି ମିଳାଇ ଯାଇଛି । ମୋ ପଛରେ ବର୍ତ୍ତମାନ ପୋଲିସ୍ ଜୋର୍‌ସୋର୍‌ରେ ଲାଗିଛି । ହେଲେ ତା' ପୂର୍ବରୁ ମୁଁ ମୋ' ବାଟ ସଫା କରିଦେବା ଦରକାର ।

ଯୋଗୀ : ମୁଁ ତ ଆଜ୍ଞା ବୁଝୁଥିଲି... ।

କିଶୋର : ତୁ ବନ୍ଦ କର ଯୋଗୀ, ତୁ ବନ୍ଦ କର । ବହୁତ ଆଗେଇ ଯାଇଥିଲି ମୁଁ । ହେଲେ ମତେ ଶେଷରେ ସେ ପଥରେ ଧକ୍କା ଖାଇବାକୁ ହେଲା । ମଣିଷ ଯେତେବେଳେ ଭୁଲର ଶେଷ ସୀମାରେ ଯାଇ ପହଞ୍ଚେ, ଆପେ ଆପେ ଧକ୍କା ଖାଇ ଫେରିବାକୁ ହୁଏ ।

ଯୋଗୀ : ଧକ୍କା ଖାଇବାକୁ ପଡ଼ୁ କି ଖଣ୍ଡିଆ ଯୋତା ଖାଇବାକୁ ପଡ଼ୁ, ମୁଁ କିନ୍ତୁ ମାଷ୍ଟ୍ରାଙ୍କୁ ବିଭାହେବି ଆଜ୍ଞା । ଆପଣଙ୍କ ଭରସାରେ ମୋ ମା' ସବୁ ତେଣେ ବାହାଘରର ସବୁ ଯୋଗାଡ଼ କରି ସାରିଲେଣି । ଆପଣ ଦୟା ଯାହାଁରେ ନିଷ୍ଟୟ ସିବେ ।

କିଶୋର : (ହସିକି) ବାସ୍ତବିକ୍ ତୁ ଜଣେ ବୋକା । ହେଲେ ମୁଁ ବନ୍ଧୁତ୍ୱର ଦ୍ୱାହି ଦେଇ ଯେଉଁ ସବୁ କାମ କରିଗଲି, କେହି ସେମିତି ନ କରୁ । କ୍ଷଣିକ ତୃପ୍ତି ସାଧନ ପାଇଁ ରାଜୁ ଭଳି ଜଣେ ବନ୍ଧୁର ଯେଉଁ ଅପକାର ମୁଁ କରିଛି ହୁଏତ ମତେ ମୃତ୍ୟୁପରେ ମଧ୍ୟ ମୁକ୍ତି ମିଳି ପାରେନା... ।

ଯୋଗୀ : (ହଠାତ୍ ବାହାରକୁ ଦେଖି) ବାବୁ, ପୋଲିସ୍ ।

(କିଛି ଭୟରେ ଥରିବାକୁ ଲାଗିଲା । କିଶୋର ବିଚଳିତ ହୋଇ ଉପାୟ ଖୋଜି ପାଉ ନଥିଲା । ଇତି ମଧ୍ୟରେ ଯୋଗୀ ଚାଲିଯିବାକୁ ଉଦ୍ୟତ ହେଉଥିଲା ବେଳେ ବାହାରେ ପୋଲିସ୍ whistle ଶୁଣାଗଲା)

କିଶୋର : ରହ ଯୋଗୀ ! ପୋଲିସ୍ ଆସନ୍ତୁ । ତୁ ଚାଲିଗଲେ ସବୁକଥା ଅଛପା ରହିଯିବ । ପୋଲିସ କ'ଣ ମତେ ଏଇଠୁଁ ନେଇ ଯିବ ବୋଲି ଭାବୁଛୁ ? ତା' ପୂର୍ବରୁ ମୁଁ ମୋ ବାଟ ଧରିବି । (ପକେଟରୁ ଶିଶିଟିଏ ବାହାର କଲେ) ଏଇ ଦେଖ୍, ଏଇଟା କ'ଣ ଜାଣୁ ?

ଯୋଗୀ : କ'ଣ ଆଜ୍ଞା ?

କିଶୋର : ବିଷ... ।

ଯୋଗୀ : ବିଷ !!!

କିଶୋର : ହଁ, ଯୋଗୀ, ବିଷ । ଶେଷରେ ବିଷହିଁ ମୋତେ ଶାନ୍ତି ଦେବ । ପୋଲିସ ମୋ ଶବଟାକୁ ନେଇ ଅଫିସରେ ହୁଏତ ଭେଟି ଦେବେ । ଆଉ ତୁ ରାଜ ସାକ୍ଷୀ ହୋଇ ସବୁ କଥା ଖୋଲି କହିବୁ । ଅନ୍ତତଃ କେଷ୍ଟ ପୂର୍ବରୁ ରାଜ୍ ସହିତ ଥରେ ଦେଖା ହୋଇ ପାରିଲାନି । ଦେଖା ହେଲେ କହିବୁ, ଯୋଗୀ, ମୋ କର୍ମ ପାଇଁ ମୁଁ ଅନୁତପ୍ତ । ତା' ପରେ ତୋର ମୁକ୍ତି ।

(କହି ଶିଶିରୁ ବିଷ ଖାଇଲା ଏବଂ ସଙ୍ଗେ ସଙ୍ଗେ ଯନ୍ତ୍ରଣାରେ ଛଟପଟ ହୋଇ ଟଳି ପଡ଼ିଲା)

ଯୋଗୀ : ବାବୁ... !!! (କାନ୍ଦ ପାଖରେ ଡାକୁଥାଏ) ଅନ୍ତତଃ ଆଉ କେତେ ଦିନ ଗଲେ ବରଯାତ୍ରୀରେ ଯାଇଥାନ୍ତି । ବାବୁ...ବାବୁ... ।

(ଚିତ୍କାର କରୁଥାଏ । ପ୍ରବେଶ କଲେ ପୋଲିସ ସବ୍-ଇନସ୍‌ପେକ୍ଟର ଓ ପୋଲିସ)

ପୋ:ସ:ଇ : ବାହାଦୁର, ହାତ କଡ଼ି ଲଗା ଯୋଗୀକୁ । ଯୋଗୀ, ତୁମ କିଶୋର ବାବୁ ଆଜି ଏମିତ ଶୋଇଛନ୍ତି କାହିଁକି ? ମଦ ନିଶାଟା ଖୁବ୍ ବଢ଼ିଗଲାନା କ'ଣ ?

ଯୋଗୀ : ନା' ବାବୁ, ଆଜି ମୋଟେ କିଛି ଖାଇ ନାହାନ୍ତି । କ'ଣ ଟିକିଏ ଗୋଟେ ଶ୍ଳେଟ କାଚରୁ ଖାଇଲେ । ତା' ପରେ ସଙ୍ଗେ ସଙ୍ଗେ ଟଳି ପଡ଼ିଲେ ।

ପୋ:ସ:ଇ : (ଚତୁର୍ଦ୍ଦିଗକୁ ନିରୀକ୍ଷଣ କରି କାଚଟିଏ ଖୋଜି ପାଇଲେ) ଆରେ ଏଇ ଯେ poision । (କିଶୋରକୁ ପରୀକ୍ଷା କରି, ପୋଲିସପ୍ରତି) ବାହାଦୁର, କିଶୋର ବାବୁ ଶେଷ ହୋଇ ଯାଇଛନ୍ତି । ଲାସଟାକୁ ଏଠୁ ନେବାର ବ୍ୟବସ୍ଥା କରିବାକୁ ହେବ । ଏ ଲୋକଟାକୁ ଆଗ ଗାଡ଼ିରେ ବସାଅ ।

ଯୋଗୀ : ମତେ କାହିଁକି କୁଆଡ଼େ ନେବ ବାବୁ ମୁଁ କିଛି କରିନି ।

ପୋ:ସ:ଇ : ଚୁପ୍‌ରହ, ଥାନାରେ ସବୁ କହିବୁ ।

ଯୋଗୀ : ନା' ବାବୁ, ମୁଁ ମୋଟେ କିଛି କରିନି । ବାଟରେ ଯାଉଥିଲି, ବାବୁ ମତେ ଦେଖି ଡାକିଲେ ।

ପୋ:ସ:ଇ : ମୁଁ ତୁମ ଗାଁରୁ ସବୁ ଖବର ପାଇଛି । ଚୁପ୍‌ହୋଇ ଗାଡ଼ିରେ ବସ ।

ଯୋଗୀ : (ଥରୁଥାଏ) କାଲି ପରା ମୋ ବାହାଘର ! କାଲି ଦିନଟା ଛାଡ଼ି ଦିଅନ୍ତୁ । ପରଦିନ ପଛେ ଦୁଇ ଜଣଙ୍କୁ ଏକାଠି ବାନ୍ଧି ନେବ ।

ପୋ:ସ:ଇ : ହଉ ଥାନାକୁ ଚାଲ । ସେଠି ବାହାଘର ହେବ ।

(ଯୋଗୀ ନାହିଁ, ନାହିଁ କରୁଥାଏ, ପୋଲିସ ଗଲା ଧକ୍‌କା ଦେଇ ନେଉଥାଏ)

—ଅଂଧାର—

## ନବମ ଦୃଶ୍ୟ

[ପୂର୍ବ ବର୍ଣ୍ଣିତ ରାଜାଙ୍କ ବସାଘର । —ବିକୃତ ମସ୍ତିଷ୍କ ରାଜା ଚୌକି ଉପରେ ବସିଛି । ଗୀତା ରାଜାଙ୍କୁ ବଶ କରିବା ପାଇଁ ଅନ୍ତରାଳରୁ ନାଚି ନାଚି ଆସିଛି । ଗୀତର ପ୍ରଥମ ପଦ ଶେଷରେ ସାଧାରଣ ବେଶରେ ନାଚି ନାଚି ଆସିଛି ମାତ୍ର, ଦ୍ୱିତୀୟ ପଦପରେ ପୁଣି ଗୀତା ତୃତୀୟ ପଦରେ । ଶେଷ ପଦରେ ଦୁହେଁ ରଙ୍ଗମଞ୍ଚର ଦୁଇ କଡ଼ରେ ନାଚୁଛନ୍ତି । ]

ଗୀତା : (ଆଧୁନିକ ନୃତ୍ୟ)

ଏ...ମଳୟ, ଏ.. ଜୋଛନା...

ତୁମି ତୁମି ଯାଏ କେତେ ଯଉବନ ଜୁଆର !

ଏ...ରୂପର ପସରା ମେଲି, ବନ୍ଧୁ ଗୋ ତୁମ ପାଇଁ

ଜାଲି ବସେ ମୁଁ ଜାଗର ॥ ୧ ॥

ମାୟା : ମୁଁ ଅଲେଡ଼ା ଅଖୋଜା ମଉଳା ଜହ୍ନର ଗୁଚ୍ଛ
ତୁମେ ଧାବମାନର ମଉଳା ଫୁଟଲ ହେଲେ ବାଇ ।
ଆସିବ, ଛୋଟିବ, ପରଶରେ ତୁମ
(ମୋ ମନେ ଇନ୍ଦ୍ରଧନୁ ରଂଗ ନେଇ ॥ ୨ ॥

ଗୀତା : ଏ ବରଷ ବନ୍ଧୁର ମନ ନେଇ ଯେବେ
ଅଗି ଉଠିଲ ଜୁଆର,
ତୁମେ (ମୋ) କବରୀ ମଂଡ଼ିବ, ମରମ କୁଆଁରେ
ସପନ ଭାଂଗିବ ମୋର ॥ ୩ ॥

ମାୟା ଓ ଗୀତା : ଅଳସୀ ଲଜ୍ଜାର ଅଳସ ତନୁରେ
ଅଲପ ଅଲପ ହସ,
ସେତ, ମଧୁମଳୟର ମନ୍ଦ୍ର ନିନାଦେ
ଫୁଟାଇ ପାରେନା ବାସ ।

ରାଜୁ : NO, stop it please, stop it !

( ନୃତ୍ୟ ଶେଷ ହେବା ବେଳକୁ ରାଜୁର ସ୍ୱରରେ ଆଲୋକ ଲିଭିଯାଇଛି । ପୁଣି ଆଲୋକ ଜଳି ଉଠିଲ ବେଳକୁ ଦେଖାଗଲ ରାଜୁର ପାଦ ଦେଶରେ ଗୀତା । କ୍ରମେ ସେ ରାଜୁକୁ ଧରି ନେଇ ଭିତରକୁ ଚାଲିଯାଇଛି । )

(ବାହାରେ ମକୁନ୍ଦର ସ୍ୱର ଶୁଣାଗଲ)

ମକୁନ୍ଦ : ( ବାହାରୁ ) ଭିତରକୁ ଆସି ପାରୁ କି ?

ଗୀତା : ( ବିବ୍ରତ ହୋଇ ବାହାରକୁ ଭିତରୁ ବାହାରିଛି । ଭିତରକୁ ଯାଇ ଫେରି ଆସିଛି । ) କିଏ ? ଆସ ।

(ପ୍ରବେଶ କରନ୍ତି ମାୟା ଓ ମକୁନ୍ଦ । ଗୀତା ମାୟାକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଛି)

ମାୟା : ଭଉଣୀ । ରାଜୁ ବାବୁ କାହାଁନ୍ତି ?

ମକୁନ୍ଦ : (ଭିତରକୁ ଲକ୍ଷ୍ୟକରି) ରାଜୁ ବାବୁ ! ରାଜୁ ବାବୁ !

ଗୀତା : ଏଇଟା ଗାଁ ନୁହେଁ ସହର । କାହିଁକି ସେମିତି ଚିତ୍କାର କରି ଚାଲିଛ ? ତୁମେମାନେ ଏଠି କାହିଁକି ? ଏଠି ତୁମର କ'ଣ କାମ ? ଚାଲିଯାଅ ଏଠୁଁ ।

ମକୁନ୍ଦ : ବୋଧହୁଏ ତୁ ହୋସରେ ନାହୁଁ । କଲେ ଗୀତା ! ତୁ କୁଆଡେ କଛୁ ଖାଇଛୁ କଲେ ? ମୁଁ ପରା ତମ ଗାଁର ମକୁନ୍ଦ, ଆଉ ଇଏ ରାଜୁ ବାବୁଙ୍କର ସ୍ତ୍ରୀ ମାୟା ।

ମାୟା : ଭଉଣୀ ! ଆମର ଏ ଦୁର୍ଦ୍ଦିନରେ ...... ।

ଗୀତା : ଚୁପ୍‌କର । କଏ ତୋ ଭଉଣୀ ? ଲାଜ ମାଡୁନାହିଁ ମୁହଁକୁ ? ବର ଯଦି ମିଳୁ ନ ଥିଲା ମଲୁନ । ଗାଁରେ କ'ଣ କୂଅ ପୋଖରୀ ନ ଥିଲା ? ଏଠି ପର ଘରେ ପୁଣି ପର ପୁରୁଷକୁ ନିଜର ବୋଲି ସଫେଇ ଦେବାକୁ ଆସିଛୁ ?

ମାୟା : ନା, ନା, ତୁମେ ସେମିତି କହନା ଭଉଣୀ ! ତାଙ୍କ ସହିତ ମୋର ବିବାହ ମଧ୍ୟ ସରିଛି । ଏ ବିବାହ ମକୁଭାଇ ନିଜ ହାତରେ କରେଇଛନ୍ତି । ଶରତ ବାବୁ ଗାଁକୁ ଯିବା ପରେ ଗାଁରେ ସମସ୍ତେ ଜାଣି ସାରିଲେଣି । ମୁଁ ଶୁଣିଲି ଗୋଟାଏ ମିଛ ଖବରରେ ସେ ପାଗଳ ହୋଇ ଯାଇଛନ୍ତି ।

ଗୀତା : ଚୁପ୍‌କର । ଆଉ ବେଶିକିଛି କହିବା ଦରକାର ନାହିଁ । ରାଜୁ ବାବୁ କାହିଁକି ପାଗଳ ହେବେ । ସେ ବେଶ୍ ସୁସ୍ଥ ସବଳ ଅଛନ୍ତି । ସେ ମୋର ସ୍ୱାମୀ । ତାଙ୍କ ସହିତ ମୋର ଘର ସଂସାରତ ଆଜି ନୂଆ ନୁହେଁ । ତୁମେମାନେ କ'ଣ ମୋ ସଂସାରରେ ନିଆଁ ଜାଳିବାକୁ ଆସିଛ ? ମୋର ବିନାନୁମତିରେ ତୁମକୁ ଏ ଘରେ ପ୍ରବେଶ କରିବା ଅଧିକାର କିଏ ଦେଲା ? ଚାଲିଯାଅ ତୁମେମାନେ ।

ମାୟା : ଚାଲିଯିବୁ ଭଉଣୀ । ନିଶ୍ଚୟ ଚାଲିଯିବୁ । ଯେଉଁ ଆଶା ନେଇ ଗାଁରୁ ଆସିଥିଲି ସେ ଆଶା ଯେତେବେଳେ ମଉଳି ଯାଇଛି, ...... । ଆଉ ଏଠି ଆମର କି କାମ ? ହେଲେ ଭଉଣୀ ! ମୋର ଭୁଲ ରହିଲା

କେଉଁଠି ? ତାଙ୍କର ଯଦି ତୁମ ସହିତ ଘର ସଂସାର କରିବାର ଥିଲା ତା' ହେଲେ ମୋ ସହିତ ଖେଳ ଖେଳୁଥିଲେ କାହିଁକି ? କାହିଁକି ସେ ଗରିବ ଘରର ଅଳିଆ ଅଦନା ଫୁଲଟିକୁ ଆଦର ନେଇଥିଲେ ? କାହିଁକି ସେ ମକୁଭାଇ ଆଗରେ ଫୁଲମାଳର ଆଦାନ ପ୍ରଦାନରେ ମତେ ବିବାହ କରିଥିଲେ ?

ଗୀତା : ମୁଁ କିଛି ଶୁଣିବାକୁ ଚାହେଁ ନା । ମୁଁ କହୁଛି ତୁମେମାନେ ଚାଲିଯାଅ ଏଠୁ ।

ମକୁନ୍ଦ : ହଉ ଗୀତା, ତୁ ପାଟି ତୁଣ୍ଡ କରି ଘର କମ୍ପେଇବା କିଛି ଦରକାର ନାହିଁ । ଯିଏ ଆମକୁ ଡାକି ଯାଇଥିଲା ଆଜି ଯାହାପାଇଁ ଆମେ ଏଠାକୁ ଆସିଛୁ ସେ ବୁଢ଼ୀଙ୍କର ଦେଖା ହୋଇଗଲେ ଆମେ ଚାଲିଯିବୁ ।

ମାୟା : ନା' ମକୁଭାଇ ! ଆମେ ଏଠି ଆଉ ମୂହୂର୍ତ୍ତେ ରହିବା ଉଚିତ ନୁହେଁ । ଜଣେ ବଡ ଲୋକର ପୁଅକୁ ବିଶ୍ୱାସକରି ମୁଁ ଆଜି ଠକି ଯାଇଛି । ଏତେ ସରଳ ବିଶ୍ୱାସୀ ହେବା ମୋର ଉଚିତ ନ ଥିଲା । ତା'ର ଫଳ ଆଜି ମୁଁ ଠିକ୍ ପାଉଛି । ଏ ଜୀବନରେ ଆଉ ଶାନ୍ତି ନାହିଁ । ଯେଉଁ ଘର ଧନେ ନଈ ତଟରେ ଆମେ ତୋଳିଥିଲୁ ସେତ ବାଲିଘର । ସାମାନ୍ୟ ବରଷା ପବନରେ ତାହା ଭୁଶୁଡ଼ି ଯିବାର କଥା, ଭୁଶୁଡ଼ି ବି ଯାଇଛି । ମଣିଷ ଶାନ୍ତିରେ ନିଶ୍ୱାସ ମାରିବାକୁ ଯିନା ଘର ତୋଳେ, ମୋ ଘର ଯେତେବେଳେ ଭାଙ୍ଗି ଯାଇଛି କିଏ ଶାନ୍ତି ନ ଦେଲେ ବି ସେ ନଈତ ମତେ ଶାନ୍ତି ଦେଇ ପାରିବ । ଆସ ମକୁଭାଇ । ଦୌଡ଼ି ଚାଲିଯାଇଛି । ମକୁ ପଛେ ପଛେ ଦୌଡ଼ିଛି ମାୟା, ମାୟା ଡାକି । ଗୀତା କ'ଣ ଭାବି ହସିଛି ବିଜୟିନୀର ହସ । କିଛି ସମୟ ପରେ ପ୍ରବେଶ କରିଛି ଶରତ । )

ଶରତ : ସେମାନେ କାହାନ୍ତି ଗୀତା ?

ଗୀତା : ଚାଲି ଯାଇଛନ୍ତି ।

ଶରତ : କେଉଁଠିକୁ ?

ଗୀତା : ଯେଉଁଠାରୁ ଆସିଥିଲେ ।

ଶରତ : କାହିଁକି ? ଫେରି ଯିବା ପାଇଁତ ଆସି ନ ଥିଲେ ।

ଗୀତା : (ହସି) ଆପଣଙ୍କ ଭଳି ଶିକ୍ଷିତ ବ୍ୟକ୍ତିଙ୍କୁ ପୁଣି ବୁଝେଇବାକୁ ପଡ଼ିବ ?
ଶରତ : ଅଚ୍ଛା, ରଜନୁ ସହିତ ମାୟାର ଦେଖା ହେଲା କି ନାହିଁ ?
ଗୀତା : ଦୁଃଖର କଥା । ସେ ସୌଭାଗ୍ୟ ହତଭାଗିନୀ ମାୟା ପାଇ ପାରିଲାନି ।
ଶରତ : ସେ ସୌଭାଗ୍ୟ ମାୟା ପାଇ ପାରିଲାନି, ତା' ଜାଣି ଜାଣି ତୁମେ ତା'କୁ ସୁଯୋଗ ଦେଲନି ?
ଗୀତା : ହଁ, ସେଇଥିପାଇଁ ବୋଲି ଧରିନିଅନ୍ତୁ । ଅଦିନରେ ଅତ୍ୟନ୍ତ ଘନ ବରଷା ଫେରିଆସେ ତା' ହେଲେ ବଣରେ ଲାଗିଥିବା ନିଆଁ କ'ଣ ଲିଭିବନି ?
ଶରତ : ପ୍ରଥମ ବର୍ଷାରେ ଯେଉଁ ନିଆଁ ଲିଭିଥାଏ, ସେ କ'ଣ ଜଳି ଉଠେ ଯେ, ଲିଭିବ ।
ଗୀତା : ତା' ନ ହେଲେ ମୋର ବହୁ ଦିନର ଆକାଂକ୍ଷା ପୂର୍ଣ୍ଣ ହେବ କେମିତି ?
ଶରତ : ତୁମର ଏ ଆକାଂକ୍ଷା ଏ ଜୀବନରେ ପୂର୍ଣ୍ଣ ହେବାର ନୁହେଁ, ଗୀତା ।
ଗୀତା : ଶରତ ବାବୁ ?
ଶରତ : ହଁ, ଗୀତା ! ଯେ ହେତୁ ସେ ସାଧନା ତୁମର ନାହିଁ । ତୁମେ କ'ଣ ଭାବୁଛ, ଅନ୍ୟକୁ ଦୁଃଖ ଦେଇ କେହି କେବେ ସୁଖୀ ହୋଇପାରେ ? ମାୟାକୁ ବିଦାୟ ଦେଲ, ଅଥଚ ରଜନୁ ସହିତ ଦେଖା କରିବାକୁ ମଧ ଦେଲନି । ନିଷ୍ଠୁର ତୁମେ ତା'ଙ୍କ ମନରେ ବିଷ ପ୍ରୟୋଗ କରିଛ । ଦେଖା ନ ପାଇ ମାୟା ଯେତେବେଳେ ଫେରି ଯାଇଛି । ସେ ହୁଏତ ତା' ଜୀବନ ନଷ୍ଟ କରି ଦେବାକୁ ମଧ ପଛଘୁଂଚ ଦେବନି । ତୁମେ ଥରେ ଭାବି ଦେଖ ଗୀତା ! ମାୟାର ମିଥ୍ୟା ମୃତ୍ୟୁ ସମ୍ବାଦ ପାଇ ଯିଏ ପାଗଳ ହୋଇ ଯାଇ ପାରିଲା, ସିଏ ଦିନେ ପ୍ରକୃତ ସମ୍ବାଦ ପାଇବା ପରେ ଧୈର୍ଯ୍ୟ ଧରି ରହିପାରିବ, ନା' ସେ ତୁମକୁ କ୍ଷମା ଦେଇ ପାରିବ ?
ଗୀତା : ଶରତ ବାବୁ !

ଶରତ : ହଁ, ଗୀତା ! ସ୍ନେହ, ପ୍ରେମ ଆଉ ଆତ୍ମଶକ୍ତିରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା ବସ୍ତୁ ଏ ଦୁନିଆରେ କିଛି ନାହିଁ । ତୁମେ ତୁମ ଲକ୍ଷ୍ୟ ପଥରେ କଣ୍ଟା ମାଡ଼ିବା ପୂର୍ବରୁ ସେ ପଥରୁ ଫେରିଆସ ଗୀତା । ଭଗବାନଙ୍କ ଦରବାରରେ ନିଜକୁ କଳଙ୍କିତ କରନା । ଯାହାକୁ ଭଲ ପାଇବା-ପାଇଁ ଏତେ ପରିଶ୍ରମ କରୁଛ ବରଂ ତା'ପାଇଁ କିଛିଟା ତ୍ୟାଗ ସ୍ୱୀକାର କର । ସେଥିରେ କି ତୁମର ମଂଗଳ ନିଶ୍ଚୟ ହେବ । ନଚେତ୍ ମୁଁ ସତ କହୁଛି ଗୀତା ! ଜନ୍ମ, ଜନ୍ମାନ୍ତରେ ଶତଚେଷ୍ଟା କଲେ ମଧ୍ୟ ରାଜୁକୁ ତୁମେ ପାଇ ପାରିବନି ।

ଗୀତା : ଶରତ ବାବୁ !!!

(ଭିତର ଘରେ ରାଜୁର ପାଗଳାମି ଶୁଣାଗଲା)

ରାଜୁ : (ନେପଥ୍ୟେ) ମାସ୍ତ୍ରା ! ମାସ୍ତ୍ରା !! ନା, ନା, ତୁମେ ମରି ପାରିବନି ମାସ୍ତ୍ରା, ତୁମେ ମରିପାରିବନି । ଦେଖ ଶରତ, ସେ ଆସିଛି । ସେଇ ନଈର ଅତଳ ଗର୍ଭରୁ ସେ ଉଠି ଆସୁଛି ଅସଜଡ଼ା ବେଶରେ । ନା, ନା, ସେ ସିନା ମରିଗଲା, ମୁଁ କ'ଣ...... ? (କହି କହି ଆସିଛି) ସିଏ ଆସିଥିଲା...... (କାନ୍ଦିଛି) ।

ଗୀତା : (ଅନୁତପ୍ତ ହୋଇ) ମତେ କ୍ଷମାକର ଶରତ ବାବୁ, ମତେ କ୍ଷମାକର ।

— ଅଂଧାର —

# ଦଶମ ଦୃଶ୍ୟ

[ ଗ୍ରାମ୍ୟ ପଥ—ଜନଶୂନ୍ୟ ରାତି । ଗାଁ ରାସ୍ତାରେ ଏକାକିନୀ ଚାଲିଛି ମାୟା । ମନରେ ତା'ର ଅସୀମ ଦ୍ୱନ୍ଦ । ଜୀବନର ସବୁ ଆଶା ମଉଳିବ । ପରେ ତାର ଜୀବନ ବିସର୍ଜନ କରିବାକୁ ସେ ଆଗେଇଛି । ପ୍ରଥମ ଗୀତଟିର କେତୋଟି ପଦ ଭାସିଆସିଛି ଅନ୍ତରାଳରୁ । ଗୀତର ଶେଷରେ ତା'ର ମନରେ ପ୍ରତିଧ୍ୱନିତ ହେଉଛି ଲୋକେଇପଦ କଥା ]

ରାଜୁର ସ୍ୱର : ମୋ ସ୍ୱପ୍ନ ଦିନେ ସତ୍ୟରେ ପରିଣତ ହେବ । ହେଲେ, ସେଥିପାଇଁ ନିନ୍ଦା, ଅପବାଦ ଯାହା ସବୁ ଆସିବ.. ... । ତୁ ପାରିବୁତ ମାୟା...... ? ଆମେ ଉଡ଼ିଯିବା ସେଇ ଦେଶକୁ ଯେଉଁଠି ନଥିବ ବାଧା ଓ ବନ୍ଧନ ।

ଦନେଇର ସ୍ୱର : ତୁ ରାଜି ହୋଇଯା ମା, ତୁ ରାଜି ହୋଇଯା । ଆଜିର କଥା କାଲିକି ନାଁ ଥାଏ ମା' ! ବଡ ଲୋକ ସେ । ମନେ ନ ଥିବ ତାଙ୍କର ମାୟା କିଏ ?

ଗୀତାର ସ୍ୱର : ଚୁପ୍ କର ! କିଏ ତୋ ଭଉଣୀ ? ଲାଜ ମାଡ଼ୁ ନାହିଁ ମୁହଁକୁ ? ଘର ବର ମିଳୁ ନଥିଲା ମଲୁନି ? ଗାଁରେ କ'ଣ କୂଅ, ପୋଖରୀ ନଥିଲା ? ଏଠି ପର ଘରେ ପୁଣି ପରପୁରୁଷକୁ ନିଜର ବୋଲି ସଜେଇ ଦେବାକୁ ଆସିଛୁ ? ଗାଁରେ କ'ଣ କୂଅ ପୋଖରୀ ନଥିଲା ? ଗାଁରେ କ'ଣ କୂଅ ପୋଖରୀ ନଥିଲା ? ଗାଁରେ କ'ଣ କୂଅ, ପୋଖରୀ ନଥିଲା ? ? ?

[ ଏଭଳି କେଇପଦ କଥା ମାୟାର ଅସହ୍ୟ ବୋଧ ହେଲ ! ଗତି ତା'ର କ୍ଷିପ୍ର ହୋଇ ଉଠିଲା । ଠିକ୍ ଏତିକି ବେଳେ ଦୂରରୁ ଶୁଣାଗଲା ମକୁନ୍ଦର ସ୍ୱର । ମାୟା! ମାୟା !! ]

— ଅଂଧାର —

## ଶେଷ ଦୃଶ୍ୟ

[ ନଈକୂଳ—ମାୟା ଦ୍ରୁତ ବେଗରେ ପ୍ରବେଶ କରିଛି । ମାୟା ନଈ ହୁଡ ଉପରକୁ ଉଠିଛି । ପୁଣି ଶୁଣାଗଲା "ଗାଁରେ କ'ଣ କୂଅ ପୋଖରୀ ନଥିଲା ? ଏଠି ପର ଘରେ ପୁଣି ପର ପୁରୁଷକୁ ନିଜର ବୋଲି ସଫେଇ ଦେବାକୁ ଆସିଛୁ ?" । ମାୟା ଡେଇଁ ପଡ଼ିଛି ନଦୀ ଗର୍ଭକୁ । ଦୂରରୁ ମକୁନ୍ଦ ପ୍ରବେଶ କରିଛି । ନଈ ହୁଡ ଉପରକୁ ଉଠି ସେ ଦେଖିଛି ମାୟାକୁ ନଦୀ ଗର୍ଭରେ । ମାୟାକୁ ଉଦ୍ଧାର କରିବା ପାଇଁ ସେ ମଧ୍ୟ ଲମ୍ଫ ପ୍ରଦାନ କରିଛି ନଦୀକୁ । ଏତିକି ବେଳେ ପାଗଳ ରାଜୁ ଦୌଡ଼ିଆସି ନଦୀକୁ ଡେଇଁ ପଡ଼ିବାକୁ ଗଲବେଳେ ପଛରୁ ଦୌଡ଼ି ଆସି ଟାଣି ଧରିଛି ଶରତ । ]

ଶରତ : ଏ କ'ଣ କରୁଛୁ ରାଜୁ ?

ରାଜୁ : ମତେ ଛାଡ଼ିଦେ ଶରତ । ମାୟା ଚାଲିଗଲା । ମୋ ବାଲିଘର ଭାଂଗିଗଲା ମୋ ସ୍ୱପ୍ନ ଭୁଟିଗଲା । ମତେ ମଧ୍ୟ ଯିବାକୁ ଦେ ।

ଶରତ : ତୁ ଏତେ ବ୍ୟସ୍ତ ହୋଇ ପଡ଼ନା ରାଜୁ । କେହି କୁଆଡ଼େ ଯାଇନି । ତୁ ବୁଝିବାକୁ ଚେଷ୍ଟାକର । ମକୁନ୍ଦ ନଈ ଭିତରକୁ ଯାଇଛି । ସେ ନିଶ୍ଚୟ ମାୟାକୁ ଉଦ୍ଧାର କରି ଆଣିବ ।

(ରାଜୁ କହିଁ କହିଁ ହୋଇ କାନ୍ଦୁଥିଲା । ମକୁ ମାୟାକୁ ନଈରୁ ଉଠେଇ ଫେରି ଆସୁଥିଲା)

ରାଜୁ : ମାୟା !!! ମକୁଭାଇ,......ମକୁଭାଇ ! ମୋ ମାୟାକୁ ମତେ ଦିଅ ଭାଇ ।

ମକୁନ୍ଦ : ସେ ତୁମ ମାୟା ନୁହେଁ ବାବୁ । ତୁମେ ତ ବଡ଼ ଘରର ପୁଅ । ଆଉ ସେ ଗରୀବ କେଉଟ ଘରର ଝିଅ । (ମାୟାକୁ ତଳେ ଶୁଆଇ ଦେଇଛି)

ରାଜୁ : ବିଶ୍ୱାସ କର ମକୁ, ମୁଁ ମାୟାକୁ କେବେ ଦୂରେଇ ଦେବାକୁ ଚେଷ୍ଟା କରିନି । ତୁମେ ମତେ ଭୁଲ ବୁଝିନା ।

(ଶରତ ଓ ରାଜୁ ମାୟାର ସେବାରେ ଲଗିଛନ୍ତି । କିଛି ସମୟ ପରେ ମାୟାର ଜ୍ଞାନ ଫେରି ଆସିଛି)

ମକୁନ୍ଦ : ସବୁ ମୋର ଭୁଲ ବାବୁ । ସବୁ ମୋର ଭୁଲ । ମୁଁ ମୋର ସରଳ ମନରେ ଆଗପଛ ନ ବିଚାରି ଫୁଲ ମାଳ ଦେଇ ତୁମ ଦୁହିଁଙ୍କ ହାତ ଛୁଂଦ ଦେଇଥିଲି । ସେଇଟି ମୋର ଭୁଲ ହୋଇଗଲା । ଆଉ ଯାହା ଫଳରେ ମୋ ଭଉଣୀର ଆଜି ଏ ଦଶା । (କାନ୍ଦୁଛି)

ଶରତ : ଭୁଲ କାହାର ନୁହେଁ ମକୁ ! କିଶୋରର ଗୋଟାଏ ଚିଠିରେ ଏତେ ସବୁ ଓଲଟ ପାଲଟ ହୋଇଗଲା । ତା' ଫଳ ସେ ପାଇ ସାରିଛି ।

ରାଜୁ : ମତେ କ୍ଷମା କର ମକୁଭାଇ ।

ମକୁନ୍ଦ : କ୍ଷମା ମୁଁ ଦେବି ବାବୁ ?

ମାୟା : (ଧୀରେ ଧୀରେ ଉଠି) ତୁମେ ? ତୁମେ ଆସିଛ ? ତୁମେ ସବୁ ଚାଲିଯାଅ । ନା, ନା ମୁଁ ତୁମର କେହି ନୁହେଁ !

ରାଜୁ : ମାୟା ! ମୁଁ ତୁମର ସେଇ ଧୂଳି ଖେଳର ରାଜୁ । ମତେ ବିଶ୍ୱାସ କର ମାୟା । ମୋ ମନରୁ ମୁଁ ତୁମକୁ କେବେ ଅନ୍ତର କରିନି । ତୁମେ କହୁଥିଲନା—ମୋ ସ୍ୱପ୍ନ ସାର୍ଥକ କରିବା ପାଇଁ ତୁମେ ସବୁ କିଛି ପାରିବ । ଆଜି ଏତିକି କ'ଣ ପାରିବନି ?

ଶରତ : ସେ ଉଦ୍‌ଭ୍ରାନ୍ତ କିଶୋରର ଭୁଲବାଟ ଲାଗି ଏ ସବୁ ଘଟିଗଲା ଭାଉଜ ! ତୁମେ ରାଜୁ ଭାଇଙ୍କୁ ଭୁଲ ବୁଝନା ।

ଗୀତା : (ପ୍ରବେଶି) ଅନ୍ତତଃ ମୋ କଥାକୁ ତୁମେ ବିଶ୍ୱାସ କର ଭଉଣୀ । ନଚେତ ପାଇବାର ଆଶା କରି ମୁଁ ତୁମ ମନକୁ ବିଷାକ୍ତ କରିଛି । ସେଥିପାଇଁ ମୁଁ ଲଜ୍ଜିତ ଓ ଦୁଃଖିତ । ମତେ କ୍ଷମା କର ଭଉଣୀ, କ୍ଷମା କର । (ରାଜୁ ପ୍ରତି) ରାଜୁ ଭାଇ । ତୁମେ କ'ଣ ମୋତେ କ୍ଷମା ଦେବନି ?

ରାଜୁ : ଗୀତା, ମତେ ତୁମେ ସବୁବେଳେ ସେଇ ଭାଇ ଡାକରେ ଡାକ ଗୀତା ! ତୁମ ତ୍ୟାଗ ମୋର ସବୁଦିନ ପାଇଁ ମନେ ରହିବ ।

ଗୀତା : କିନ୍ତୁ...... ।

ଶରତ : କିନ୍ତୁ କ'ଣ ଗୀତା ? ଭାଙ୍ଗିବା ସହଜ । ହେଲେ ସବୁ ସନ୍ଧି ସ୍ମୃତିକୁ ପଥର କରି ଗଢ଼ିବା କଷ୍ଟ । ଗୋଟିଏ ବାଲିଘର ଆଜି ଗଢ଼ି ଉଠିଛି ଏବଂ ସେଥିରେ ତୁମର ମଧ୍ୟ ନାଟକୀୟ ଭୂମିକା ରହିଛି । ଏଥିରେ ତୁମେ ଗର୍ବ କରିବାର କଥା, ଗୀତା ।

ରାଜୁ : କିନ୍ତୁ ତୋ ଭୂମିକା ତ କିଛି କମ୍ ନୁହେଁ...... ।

ଶରତ : ନା' ବନ୍ଧୁ ଭାବରେ କେବଳ ମୁଁ ସାହାଯ୍ୟ କରିବାକୁ ଚେଷ୍ଟା କରିଛି । ଯଦି ଭୁଲଥାଏ କ୍ଷମା ଦେବୁ ।

ରାଜୁ : ନା, ନା—ତୋ ଭୁଲର କ୍ଷମା ନାହିଁ । ଯଦି ଆଉ ଟିକିଏ ସାହାଯ୍ୟ ନ କରୁ ତେବେ ତୋତେ ମୋଟେ କ୍ଷମା ଦିଆଯିବନି । ତା' ଛଡ଼ା ଏଇଟା ତୋ ବନ୍ଧୁର ଏ ଏକ ଅନୁରୋଧ ବୋଲି ମନେକର ।

ଶରତ : ଅନୁରୋଧ କାହିଁକି ? ଇଚ୍ଛା କଲେ ବନ୍ଧୁ ରୂପେ ଆଦେଶ କରିପାରୁ ।

(ରାଜୁ ଯାଇ ମକୁନ୍ଦର କାନରେ କିଛି କହିଲା । ମକୁନ୍ଦ ତାକୁ ବୁଝି ହସିଲା । ଏବଂ ପରେ ସେ ଗୀତା ପାଖକୁ ଯାଇ ଗୀତାର କାନରେ କିଛି

କହିଲ । ଗୀତା ତାହା ଶୁଣି ପ୍ରଥମେ ଚମକି ଉଠିଲ ଓ ପରେ ତା' ଦେହରେ ଏକ ଲଜ୍ଜାର ଶିହରଣ ଖେଳିଗଲା ଏବଂ ସେ ଚାଲି ଯିବାକୁ ଚେଷ୍ଟା କଲା ବେଳେ ମକୁନ୍ଦ ତା'କୁ ଧରି ଅଣିଛି । )

ମକୁନ୍ଦ : ଶରତ ବାବୁ, ଏଣିକି ହିନ୍ଦଏ ଆସ ।

(ଶରତ ଓ ଗୀତାର ହାତ ମିଳାଇ ଦେଲ)

ଶରତ : ଆରେ ଏ କ'ଣ ?

ରାଜୁ : ମନା କରନା ଶରତ । ଏଇଠି ଆଉ ଗୋଟିଏ ନାଲିଘର ଗଢ଼ି ଉଠୁ । ଆମେ ଯେତେବେଳେ ଶିକ୍ଷିତ ହୋଇ ଏଭଳି ଅସବର୍ଣ୍ଣ ବାହାଘରକୁ ପ୍ରଶ୍ରୟ ନ ଦେବା ତା' ହେଲେ ସମାଜ ଆଉ କାହାଠାରୁ ଭଲ ଆଦର୍ଶ ଆଶା କରିବ ।

( ରାଜୁ ଓ ମାୟା ଏବଂ ଶରତ ଓ ଗୀତା ମକୁନ୍ଦକୁ ପାଦଧୂଳି ନେଇ ନେଉ ମକୁନ୍ଦର ପାଟିରୁ ଗୀତ ବାହାରି ଆସିଲ )

ମକୁନ୍ଦ : ଅସବ ଅସବ ବରଷା ଅସିଲା......

(ଗୀତ ଗାଇ ଗାଇ ନାଚନ୍ତି)

—: ଯବନିକା :—

---

ମୁଦ୍ରାକର—ମନମୋହନ ପ୍ରେସ୍, ବ୍ରହ୍ମପୁର—୨